# ଗାଉଁଲି ଗପ

ଲେଖକ

ଶ୍ରୀ ଶଶିଭୂଷଣ ମିଶ୍ର ଶର୍ମା

ଶିକ୍ଷକ, ଜର୍ଜ ହାଇସ୍କୁଲ, ବରଗଡ଼

ପ୍ରଥମ ସଂସ୍କରଣ

୧୯୬୦

ପ୍ରକାଶକ

କଟକ ଟ୍ରେଡ଼ିଂ କମ୍ପାନୀ

ବାଲୁବଜାର, କଟକ-୨

ମୂଲ୍ୟ ୭୫ ନୂଆ ପଇସା

GPNanda Colln., Digitized by srujanika@gmail.com

# ସୂଚୀପତ୍ର

| ବିଷୟ | ପୃଷ୍ଠାଙ୍କ |
| --- | --- |
| ୧ । ଗୁଣିବିଦ୍ୟାର କରାମତି | ୧ |
| ୨ । ଦୁଇ ସାଆଁଳା ଝିଆର କଥା | ୧୦ |
| ୩ । ସବୁ ଯୁଗରେ ସତ୍ୟର ଜୟ | ୧୫ |
| ୪ । ବାଳିକାର ବିଚିତ୍ର ବୁଦ୍ଧି | ୨୭ |
| ୫ । ମଦନ ରସ | ୩୮ |
| ୬ । ସପୂତାମା ଯୋଡ଼ୀକୁ ହାରମ୍‌ଜାଦା ସୁଆର | ୪୯ |



GPNanda Colln., Digitized by srujanika@gmail.com

# ଗାଉଁଲି ଗପ

## ଗୁଣିବିଦ୍ୟାର କରାମତି

ଅନେକ ଦିନ ତଳର କଥା । ସମ୍ବଲପୁର ଜିଲ୍ଲା ଗୋବିନ୍ଦ ଟୋଲି ଗାଁରେ ସୁଜନ ପଣ୍ଡା ବୋଲି ଜଣେ ଜମିଦାର ଥିଲେ । ଗୋଟିଏ ଝିଅ ଜନମ କରି ତାଙ୍କର ସ୍ତ୍ରୀ ରମା ମରିଗଲେ । ଝିଅର ନା କମଳା । ସୁଜନ ପଣ୍ଡା ଗାଁର ହାଲି ବୁଝିବା ଭାର ତାଙ୍କ ଭାଇ ଦୁର୍ଜନ ହାତରେ ଛାଡ଼ି ଦେଇଥିଲେ ; ଆଉ ନିଜେ ବହି ପଢ଼ିବାରେ, ବିଶେଷ କରି ଗୁଣିବିଦ୍ୟାର ବହି ପଢ଼ିବାରେ ଓ ଝିଅକୁ ଖେଳାଇବା ଓ ଶିଖାଇବାରେ ଦିନ କାଟୁଥିଲେ । ସେ ତାଙ୍କ ଭାଇ ଦୁର୍ଜନକୁ ଭଲ ପାଉଥିଲେ ଓ ବିଶ୍ୱାସ କରୁଥିଲେ ; କିନ୍ତୁ ଦୁର୍ଜନ ଭିତରେ ଭିତରେ ବଡ଼ଭାଇକୁ ହିଂସା କରୁଥିଲା । ସେତେବେଳେ ଗୋବିନ୍ଦ ଟୋଲିର ପାଖରେ ଥିବା ଠେମଘ ଗାଁର ଜମିଦାର ଥିଲା ଢାଁସି ମହାପାତ୍ର । ସେ ପରର ଶିରି ସହି ପାରୁ ନଥିଲା । ବିଶେଷକରି ସୁଜନ ପଣ୍ଡା ସଙ୍ଗେ ତାର ପଟୁ ନଥିଲା । ଦୁର୍ଜନ ଢାଁସି ସଙ୍ଗେ ବିଚାର କରି ସୁଜନ ଓ ତାଙ୍କ ଝିଅକୁ ଗାଁରୁ ବାହାର କରିବାର ଓ ନିଜେ ଜମିଦାର ହେବାର ଉପାୟ କଲା ।

ଶ୍ରାବଣ ମାସ, ଅନ୍ଧାରପକ୍ଷ । ଉଆଁସ ରାତି । ଚାରିଆଡ଼େ କଟିକଟି ଅନ୍ଧାର, ମୁହଁକୁ ମୁହଁ ଦିଶୁନାହିଁ । ମହାନଦୀରେ ପାଣି ମାଡ଼ି ଆସୁଛି ; ଢାଁସି ୩୦।୪୦ ଜଣ ଲୋକଧରି ଗୋବିନ୍ଦ-

GPNanda Colln., Digitized by srujanika@gmail.com

ଛୋଟ ଜମିଦାର ଘରେ ହାଜର । ସୁଜନ ଓ କମଳାକୁ ନେଇ ଖଣ୍ଡେ ଡଙ୍ଗାରେ ବସାଇ ମହାନଦୀ ଭିତରକୁ ଠେଲି ଦେବାର ସ୍ଥିରକଲେ । ଏଇଟା ବି ସ୍ଥିରକଲେ ଯେ ଖାଇବା, ପିଇବା କି ପିନ୍ଧିବାକୁ ସୁଜନ ଓ କମଳା ପାଇଁ କିଛି ଦିଆଯିବ ନାହିଁ ।

ମନବୋଧ ଠେଲା ଗୋବିନ୍ଦଛୋଟ ଜମିଦାର ଘରେ ଜଣେ ପୁରୁଣା ଚାକର । ସେ ସୁଜନ ଫଡ଼ାକୁ ବହୁତ ଭଲ ପାଏ, ମାନେ ଓ କମଳାକୁ ଗେଲ କରେ । ସେ ଦୁର୍ଜନ ଓ ଘାଁସିର ଷଡ଼ଯନ୍ତ୍ର ଶୁଣି ମନେ ମନେ ବହୁତ କାନ୍ଦିଲା । ସେ କିଛି ଖାଇବା ଜିନିଷ, କେତେ ଖଣ୍ଡ ଧୋତି ଓ କେତେକ ଖଣ୍ଡ ଚୂଣି ବନ୍ଧ ଡଙ୍ଗା ଭିତରେ ଲୁଚାଇ କରି ରଖିଦେଇ ଆସିଲା ।

ସୁଜନ ଓ କମଳା ଏକ ନଦୀରେ ବୁଡ଼ି ମରନ୍ତୁ, ବା ଭୋକ ଶୋଷରେ ମରନ୍ତୁ, ବା ଶୀତ କାକରରେ ମରନ୍ତୁ—ଏହା ଥିଲା ଦୁର୍ଜନ ଓ ଘାଁସିର ଇଚ୍ଛା ; ତେଣୁ ଠେମଗରୁ ଆସିଥିବା ଲୋକମାନଙ୍କ ସାହାଯ୍ୟ ନେଇ ଅଧରାତ୍ରରେ, ଯେତେବେଳେ ଗାଆଁ ଲୋକମାନେ ଶୋଇ ପଡ଼ିଲେ ସୁଜନ କମଳାକୁ ସେମାନେ ନେଇ ଡ଼ଙ୍ଗାରେ ବସାଇ ନଦୀ ଭିତରକୁ ଠେଲିଦେଲେ ।

ଲୋକ ଭାବେ ସିନା, କିନ୍ତୁ କାମ କରେ ଭଗବାନଙ୍କ ଇଚ୍ଛା । ଲହଡ଼ାରେ ଡଙ୍ଗା ଟଳମଳ ହେଉଛି । ମଝିରେ ମଝିରେ କଡ଼ ହୋଇ ପାଣି ଡ଼ଙ୍ଗା ଭିତରେ ପଶି ଯାଉଛି । ଡ଼ଙ୍ଗା ବୁଡ଼ୁ ନ ବୁଡ଼ୁ ହେଉଛି । କମଳାକୁ ଯେତେବେଳେ ଛଅବର୍ଷ ପାଖାପାଖି । ଡ଼ଙ୍ଗା ହଲିଲାବେଳେ ତାହା ମୁହଁକୁ ଦେଖି କମଳା ହସୁଥାଏ । ସେ ପାଖେ ସୁଜନ ବଳକରେ ଭଗବାନଙ୍କୁ ଡାକୁଥାଏ । "ମୁଁ ମରେ ପଛେ କମଳାକୁ ରଖ ।"

GPNanda Colln., Digitized by srujanika@gmail.com

“ହରି ରଖିଲେ ନ ବୁଡ଼େ ପଥର । ଆଜ୍ଞ କଥାମାନ କେତେ ମାତର ।” ଡଙ୍ଗା ଯାଇ ଚଉଡ଼ା କୂଳରେ ଲାଗିଲା । ଭଗବାନଙ୍କୁ ଧନ୍ୟବାଦ ଦେଇ ସୁଜନ କମଳାକୁ ଧରି ଡଙ୍ଗାରୁ ଓହ୍ଲାଇଲେ ଓ କୂଳଉପରକୁ ଗଲେ । ସେଠାରେ ଗୋଟିଏ ବଡ଼ ପୁରୁଣା ବରଗଛରୁ କାନ୍ଦିଲା ପରି ଅନେକ ସ୍ୱର ଶୁଣାଗଲା । ସୁଜନ ତ ଗୁଣିବିଦ୍ୟା ଭଲ ଜାଣିଥିଲେ । ସେ ଜାଣିପାରିଲେ ଯେ କେତେକ ଭୂତମାନଙ୍କୁ କିଏ ସେ ଗଛରେ ବାନ୍ଧି ଦେଇଛି । ମନ୍ତ୍ରବଳରେ ସେ ସେମାନଙ୍କର ବନ୍ଧନ ଫିଟାଇ ଦେଲେ । ସେମାନେ ସୁଜନଙ୍କର ଶରଣ ପଶିଲେ ଏବଂ ସେ ଯାହା କହିବେ ତାହା କରିବାକୁ ରାଜି ହେଲେ ।

ସେହି ଭୂତମାନଙ୍କ ଭିତରେ ମୂଳ ଥିଲା ବାବନାଭୂତ । ସେ ସୁଜନଙ୍କୁ ଡରେ ଯେତେ, ମାନେ ତେତେ । ସେ କହିଲା, “ହଜୁର, ଏ କୂଳରେ ଲୋକବାକ କେହି ନ ଥିଲେ । ଆମ୍ଭେ ଭୂତମାନେ ମଜାରେ ବୁଲ୍ ବୁଲି କରି ରହୁଥିଲୁଁ । ଏଇ ଯେ ମହାନଦୀର ଭୂଜୁନ ଖଣ୍ଡିରେ ଗୋଟିଏ ଗାଁ ବସୁଛି ତାର ନା ଡାଲବ । ସେଠାରେ ଜଣେ ବୁଢ଼ୀ ଥିଲା । ତାର ବଡ଼ ଦାନ୍ତ, କଜଳା କଜଳା ଆଖି, ଲମ୍ବା ନାକ ତାର ପାଦ ମନ୍ତ୍ରରେ କଞ୍ଚା ଗଛ ଶୁଖିଯାଏ । ଫେର୍ ସେ ମନ୍ତ୍ର ଉଲଟାଇ ଦେଲେ ଶୁଖାଗଛ କଅଁଳିଯାଏ । ଡାଲବ ଗାଁର ସବୁ ଲୋକ ତାର ଚାଲିଚଳନ ଦେଖି ବିରକ୍ତ ହେଲେ ଓ ତାକୁ ଗାଆଁରୁ ବାହାର କରି ଦେଲେ । ତାର ଗୋଟିଏ ପୁଅ— ତାର ନା ପେଟକନ୍ଦା । ବୁଢ଼ୀ ପେଟକନ୍ଦାକୁ ସଙ୍ଗେ ଧରି ଏ ଚଉଡ଼ା କୂଳକୁ ପଳାଇ ଆସିଲା । ସେ ଯେଉଁ ଦିନୁଁ ଏ କୂଳରେ ପାଦ ପକାଇଲା, ସେ ଦିନୁଁ ଅମର କପାଳ ଫାଟିଲା । ବଡ଼ ଅହଂକାରୀ ସେ । ପରର ସୁଖ ସହିପାରେ ନାହିଁ । ଆମ ସମସ୍ତଙ୍କୁ ଗଛରେ

GPNanda Colln., Digitized by srujanika@gmail.com

ବାନ୍ଧି ଦେଲା । ଆମ୍ଭେ କନ୍ଦାକଟା କଲେ ସେ ହସେ । ମଲାବେଳକୁ ତ ଆମକୁ ମୁକୁଳେଇ ଦେଇ ଗଲା ନାହିଁ । ଆମ୍ଭର କପାଳକୁ ହଜୁର ଆସିଲେ ବୋଲି ଆମ୍ଭେ ବୁଲା ଚଲା କରି ପାରୁଛୁଁ । ହଜୁରଙ୍କ ଗୁଣ ଆମ୍ଭେ କେବେଁ ପାଶୋରିବୁ ନାହିଁ । ହଜୁର ଯାହା ଯାହା କହିବେ ଆମ୍ଭେ ତାହା ବରାବର କରୁଥିବୁଁ ।” ସୁଜନ କହିଲେ, “ଆରେ ବାଦନା, ତୁମ୍ଭମାନଙ୍କୁ ମୁଁ ସେହି ବୁଢ଼ୀର ଫାନ୍ଦରୁ ମୁକୁଳେଇ ଦେଇଛି ସିନା—କିନ୍ତୁ ପୁରା ଛାଡ଼ି ନାହିଁ । ମୋର ଗୋଟିଏ ବଡ଼ କାମ ଅଛି ; ହସିଖୁସି ହୋଇ ମୋର ସେଇ କାମଟା ଯଦି କରିଦେବ ତେବେ ତୁମ୍ଭମାନଙ୍କୁ ସବୁଦିନ ପାଇଁ ଛାଡ଼ି ଦେବି । ଆଜି ଏପରି କରିଦେବି ଯେ ଭବିଷ୍ୟରେ କେହି ତୁମ୍ଭମାନଙ୍କୁ ଆଉ ବାନ୍ଧି ପାରିବ ନାହିଁ । କିନ୍ତୁ ମୋର ସେଇ କାମଟା ଯଦି ନ କର ତେବେ ତୁମ୍ଭମାନଙ୍କୁ ଏପରି ବାନ୍ଧିଦେବି ଯେ କେହି କେବେ ତୁମ୍ଭଙ୍କୁ ଆଉ ମୁକୁଳେଇ ପାରିବ ନାହିଁ । ବୁଝିଲ ।” ବାଦନା କହିଲା “ହଜୁର ଯାହା ହୁକୁମ କରିବେ ଆମ୍ଭେ ତାହା ବରାବର କରିଦେବୁ ।” ସୁଜନ କହିଲେ “ଅଚ୍ଛା, ଏ କୁଦର ଚାରିଆଡ଼େ ବୁଲି ବୁଲି ଦେଖୁଥିବ ନଦୀ ଅଡ଼କୁ । କେବେ କୌଣସି ଡଙ୍ଗା ଆସୁଥିବାର ଦେଖିଲେ ମତେ କହିବ ।” ବାଦନା ମୁଣ୍ଡ ନୁଆଁଇ କରି ହଁ କଲା । ସୁଜନ କମଳାକୁ ଶିଖାଇ ଦେଲେ, ଗୁଣିବିଦ୍ୟା ବହି ପଢ଼ି ପଢ଼ି ଦିନ ଯାଉଥାନ୍ତି । ଏପରି ବାରବର୍ଷ ଦେଖୁ ଦେଖୁ ବିତିଗଲା ।

ଦିନେ ବାଦନା ଦଉଡ଼ି ଆସି ସୁଜନଙ୍କୁ କହିଲା ଯେ ଗୋଟିଏ ସୁନ୍ଦର ଡଙ୍ଗାରେ ଅନେକ ଲୋକ ବସି ଆସୁଛନ୍ତି । ସୁଜନ ଦେଖିଲେ ଯେ ତାଙ୍କର ଭାଇ ଦୁର୍ଜନ, ଠେମବର ଗର୍ଭିଣୀ ଓ ତା ପୁଅ ଓ ଆଉ କେତେଜଣ ସେଥିରେ ବସିଥିଲେ । ସେ ତାଙ୍କର ଗୁଣିବିଦ୍ୟାରୁ

GPNanda Colln., Digitized by srujanika@gmail.com

କଣ୍ଠସଣ୍ଟି ଦେଖାଇଲେ । ସେ ବାବନାକୁ କହିଲେ, "ବାବନା, ଦେଖ ବର୍ତ୍ତମାନ ନଦୀ ଉପରେ ଖୁବ୍ ଜୋରରେ ଧକ୍କା ପବନ ହେବ ଯେ ବଡ଼ ବଡ଼ ଲହଡ଼ି ଉଠିବ, ଡଙ୍ଗା ବୁଡ଼ୁ ବୁଡ଼ୁ ହେବ । ଚାରିଆଡ଼େ ଧୂଳି ହୋଇଯିବ ଯେ କେହି କାହାକୁ ଦେଖି ପାରିବେ ନାହିଁ । ତୁ ଯା ସେ ଡଙ୍ଗାରେ ଥିବା ଲୋକମାନଙ୍କୁ ଏଆଡ଼ ସେ ଆଡ଼ କରିଦେବୁ । କାହାକୁ ମାରିଦେବୁ ନାହିଁ । ମୋର ଭାଇ ଦୁର୍ଜନକୁ, ସେମସ୍ତ ଗର୍ଭିତଙ୍ଖା ଧାଁସି ମହାପାତ୍ର ଓ ତାର ପୁଅ ଚନ୍ଦ୍ରକାନ୍ତ ମହାପାତ୍ରଙ୍କୁ ଏ କୂଳର ଭିନ୍ନ ଭିନ୍ନ ପାଖରେ ପକାଇଦେବୁ । ନାଉରିମାନଙ୍କୁ ଭିନ୍ନ ଭିନ୍ନ ଜାଗାରେ ଜଣ ଜଣ କରି ପକାଇ ଦେବୁ । ଡଙ୍ଗାକୁ ନେଇ ଗୋଟିଏ ଜାଗାରେ ଲଗାଇ ଦେବୁ । ସବୁ ଏପରି ଭାବରେ କର ଯେ ପ୍ରତ୍ୟେକ ଲୋକ ଭାବିବ, "ମୁଁ ବଞ୍ଚିଛି ଓ ବାକି ସମସ୍ତେ ମରି ଯାଇଛନ୍ତି ।" ସୁଜନ ଯେପରି କହାଇଲେ ବାବନା ସେପରି ସାଙ୍ଗେ ସାଙ୍ଗେ କରିଦେଲା ।

ଚନ୍ଦ୍ରକାନ୍ତ ଏକାକୀ ଗୋଟିଏ ଜାଗାରେ ପଡ଼ି କାନ୍ଦୁଥାଏ । ବାବନା ଯେ ତାର ଅଦେଖାରେ ମଧୁର ସ୍ୱରରେ ଗୀତ ଗାଉଥାଏ ।

କାହିଁକି କାନ୍ଦୁଛୁ ପିଲା—

ମରିଛି ସେହୁ ଯେ ତୋ ବାପ ଥିଲା ରେ

ଭାଗ୍ୟେ, ତୋର ପ୍ରାଣ ବଞ୍ଚିଗଲା, ରେ ପିଲା ।।

ଚନ୍ଦ୍ରକାନ୍ତ ଗୀତର ସ୍ୱରରେ ଯେତେ ଖୁସୀ ହେଉଥାଏ, ତାର ଭାବ ବୁଝି ସେତେ ଦୁଃଖିତ ହେଉଥାଏ । ଏକାକୀ ତୁନି ପଡ଼ି ବସିଥାଏ । କଣ କରିବ, କୁଆଡ଼େ ଯିବ, କପରି ଯିବ କିଛି ଭାବି ପାରୁ ନ ଥାଏ ।

GPNanda Colln., Digitized by srujanika@gmail.com

ଠିକ୍ ସେତେବେଳେ ସୁଜନ ଓ କମଳା ସେଠାରେ ପହଞ୍ଚିଲେ । କମଳାକୁ ସେତେବେଳେ ପନ୍ଦର ପୂରିପୂରି । ଯୌବନର ପ୍ରଥମ ଲହଡ଼ି ମାଡ଼ି ଯାଉଛି । ବିମ୍ବଫଳପରି ଲାଲ ଓଠ, ମୋତିପରି ଦାନ୍ତ, ତିଳଫୁଲ ପରି ନାକ, ମାଛ ପରି ଆଖି, ଚିକଣ ଗାଲ, ଉଚ୍ଚ ଓସାର କପାଳ, ନୂଆ ମେଘ ପରି କଳା ବାଳ, ଶଙ୍ଖ ପରି ବେକ, ହାତୀଦାନ୍ତ ପରି ବାହା, ଚମ୍ପା କଢ଼ିପରି ଅଙ୍ଗୁଳି, ଡମ୍ବରୁ ମଝିପରି ଅଣ୍ଟା, ଓଲଟ କଦଳୀ ପରି ଜଙ୍ଘ, ପଦ୍ମପାଖୁଡ଼ା ପରି ପାଦ, ହଂସପରି ଚାଲି, ହରିଣୀର ଆଖି ଚାହାଣି ପରି ଚାହାଣି । ଚନ୍ଦ୍ରକାନ୍ତର ଆଖି କମଳାର ଚନ୍ଦ୍ରପରି ମୁହଁମଣ୍ଡଳରେ ପଡ଼ିଲା କ୍ଷଣି ତାର ହୃଦୟରେ ପ୍ରେମ ଜାତ ହୋଇଗଲା । ସେ ତାର ଘର, ମାଆ, ନାନୀ, ବାପ ମରିବା ଆଦି ସବୁ କଥା ଭୁଲିଗଲା । ତାର ମନରେ, ଆଖିରେ ଖାଲି କମଳାର ମୂର୍ତ୍ତି ଦିଶିଲା । ତେଣେ କମଳା ତ ତାର ବାପକୁ ଛାଡ଼ି ଆଉ ମନୁଷ୍ୟ ରୂପ କେବେ ଦେଖି ନ ଥିଲା । ସେ ଚନ୍ଦ୍ରକାନ୍ତକୁ ଦେଖିଲା କ୍ଷଣି ତାର ବାପାଙ୍କୁ ପଚାରିଲା "ବାପା, ସେଇଟା କିଏ ? ତୁମ୍ଭ ପରି ଦିଶୁଛି ଯେ ।" ସୁଜନ କହିଲେ, "ଆରେ ମା, ସେ ଯେ ଆମ୍ଭ ପରି ମନୁଷ୍ୟ, ଆମ୍ଭ ପରି ଖାଏ, ପିଏ, ଶୁଏ, ବୁଲେ, ବସେ, କଥା କହେ । ତୁ ତିନବର୍ଷର ଥିଲା ବେଳେ ଆମ୍ଭଙ୍କୁ ଏଠାକୁ ଆସିବାକୁ ହେଲା । ଏଠାରେ ତ ଆମ୍ଭ ଦୁଇଜଣଙ୍କ ଛଡ଼ା ମନୁଷ୍ୟ ନାହାନ୍ତି । ତେଣୁ ଏଠାରେ ବାରବର୍ଷ ରହିଲେ ମଧ୍ୟ ତୁ ଅନ୍ୟ ମନୁଷ୍ୟ ଦେଖିବାର ସୁବିଧା ପାଇ ନ ଥିଲୁ ।" ଏହା ଶୁଣିଲା କ୍ଷଣି କମଳା ସ୍ନେହଭରା ଆଖିରେ ଚନ୍ଦ୍ରକାନ୍ତ ଆଡ଼କୁ ଚାହିଁଲା । ଚନ୍ଦ୍ରକାନ୍ତକୁ ସେତେବେଳେ କୋଡ଼ିଏ ବର୍ଷ ହୋଇଥାଏ । ତାର ପଦ୍ମଫୁଲ ପରି ଓସାର ଆଖି, ଶୁଆ ଥଣ୍ଟପରି ନାକ, କଳାକଳା ଭ୍ରୂଲତା ଦୁଇଟା ନାକ ମୂଳରେ ମିଶିଲା ପରି

GPNanda Colln., Digitized by srujanika@gmail.com

ହେଉଥାଏ । ମୁଣ୍ଡରେ କଳା କୁଞ୍ଚ କୁଞ୍ଚ ବାଳ, ମୁଣ୍ଡବାଳ ଓ ଭ୍ରୂଲତା ମଝିରେ ଚଉଡ଼ା ଦର୍ପଣ ପରି କପାଳ, ସ୍ୱାସ୍ଥ୍ୟପୂର୍ଣ୍ଣ ଚକଚକିଆ ଧୋବଧାଉଳିଆ, ଧୋବ ଦାନ୍ତର ଦୁଇ ପାଖରେ ଗୋଲାପି ଓଠ, ନାକ ଓ ଓଠ ମଝିରେ କଳା ଓଦାର ଓଦାର ନାଲି, ଓଦାର ଗୁମ୍ଫ, ସିଂହର ଅଣ୍ଟାପରି ଅଣ୍ଟା, ହାତୀ ଦାନ୍ତପରି ଜାନୁ, ଜଙ୍ଘ, ପାଦ— କମଳା ତାର ଆଖିଜାଲରେ ଚନ୍ଦ୍ରକାନ୍ତର ରୂପରସ ପିଇବାକୁ ଲାଗିଲା ।

ବୁଢ଼ିଆ ସୁଜନ କମଳା ଓ ଚନ୍ଦ୍ରକାନ୍ତର ମନର ଭାବ ବୁଝି ଭାରି ଖୁସୀ ହେଲେ । ତାଙ୍କର ପ୍ରାଣର କମଳାକୁ ଜଣେ ରୂପବାନ୍ ଯୁବକ ହାତରେ ସମର୍ପି ଦେବାକୁ ତାଙ୍କର ଖୁବ୍ ଇଚ୍ଛା ଥିଲା । ଭଗବାନ୍ ତାହା ଘଟାଇଥିବାର ଦେଖି ଭଗବାନଙ୍କୁ ଶହ ଶହ, ହଜାର ହଜାର ଧନ୍ୟବାଦ ଦେଇ ସୁଜନ ବହୁତ ଖୁସୀ ହେଲେ । ମାତ୍ର ସେମାନଙ୍କର ପ୍ରେମପରୀକ୍ଷା ପାଇଁ ସେ ଉପରିଆ ରାଗ ଦେଖାଇ ଚନ୍ଦ୍ରକାନ୍ତକୁ କହିଲେ, "ତୁ ଜଣେ ଗୁପ୍ତ ଦୂତ ବୋଲି ମୋର ମନେ ହେଉଛୁ । ତୁ ଆମ୍ଭର ଅନିଷ୍ଟ କରିବାକୁ ଆସିଛୁ । ମୋ ସଙ୍ଗେ ଆ । ତୋର ଦେହ ଓ ଗୋଡ଼କୁ ଏକ ସଙ୍ଗେ ବାନ୍ଧି ଦେଇ ତୋତେ ଖାଲି ଶୁଖାଚେର ଗୁଳ ଖାଇବାକୁ ଓ ନଦୀର ମଇଳା ପାଣି ପିଇବାକୁ ଦେଇ ବନ୍ଦୀ କରି ରଖିଥିବି ।" ଚନ୍ଦ୍ରକାନ୍ତ ଏପରି କଠୋର କଥା ଶୁଣି ମାରିବାକୁ ଖଣ୍ଡା ଟେକି ବସିଲା । ମାତ୍ର ସୁଜନଙ୍କର ଯାଦୁବଳରେ ଚନ୍ଦ୍ରକାନ୍ତର ହାତ ଖଣ୍ଡା ମୂଠାରେ ଲାଗି ରହିଲା ଓ ତାର ପାଦ ଭୂଇଁରେ ଲାଗି ରହିଲା । ଚନ୍ଦ୍ରକାନ୍ତ ସ୍ଥିର କଲା ଯେ ସେ ଜଣେ ଯାଦୁକର ହାତରେ ପଡ଼ିଛି ଓ ଝଗଡ଼ା କରିବା ତା ପକ୍ଷେ ଅସମ୍ଭବ ଓ ଅନୁଚିତ । ହିତାପୂର୍ବେ ସେ ଭାବିଲା ଯେ ଯଦି ସେ ବନ୍ଦୀ ହେବ ତେବେ କମଳାକୁ ତ ସେ ପ୍ରତିଦିନ ଦେଖି ପାରିବ ।

GPNanda Colln., Digitized by srujanika@gmail.com

ତାପରେ ଚନ୍ଦ୍ରକାନ୍ତ ସୁଜନଙ୍କ ଆଦେଶରେ ତାଙ୍କ ଘରକୁ ଗଲା, ସେଠାରେ ଚନ୍ଦ୍ରକାନ୍ତଙ୍କୁ କାଠ କାଟିବା, ପାଣିବୋହିବା, ଆଉ କଠିନ କାମମାନ କରିବାକୁ ପଡ଼ିଲା । କମଳାକୁ ଦେଖିବାର ସୁବିଧା ସବୁବେଳେ ଥାଏ ବୋଲି ସେ କଷ୍ଟକୁ କଷ୍ଟ ମଣୁ ନ ଥିଲା । କମଳା ମଧ୍ୟେ ମଧ୍ୟେ ଚନ୍ଦ୍ରକାନ୍ତଙ୍କୁ କହେ, "ବାପାଙ୍କର ଉପରଟା ଟାଣ, ମାତ୍ର ହୃଦୟଟା ଭାରି କୋମଳ, ସେ ବଡ଼ ଦୟାଳୁ ! ତୁମ୍ଭେ ଅଧୀର ହୁଅ ନାହିଁ ।"

ଏଣେ ଠେମଗଡ଼ର ଜମିଦାର ଶାଁଖି ମହାପାତ୍ର ପୁଅ ଚନ୍ଦ୍ରକାନ୍ତ ବୁଡ଼ିମଲେ ବୋଲି ଭାବି ଭାବି ବୁଲି ବୁଲି କଳିଙ୍ଗପୁରରେ ସୁଜନଙ୍କୁ ଭେଟିଲା । ସେ ଦୁହେଁ ବସି ସେମାନଙ୍କର ଦୁର୍ଦ୍ଦଶାର ଲମ୍ବକଥାର କରିବସିଲେ । ଏ ସମୟରେ ମନବୋଧ ଠେଲୁଁ ଓ ଯେତେ ନାଉର ବୁଲି ବୁଲି ସେଠାରେ ଭେଟ ପଡ଼ିଲେ, ସମ୍ଭବ ଦେଖାଗଲେ, କିନ୍ତୁ ଠେମଗ ଗର୍ଭିଣୀ ନିଜ ପୁଅ ଚନ୍ଦ୍ରକାନ୍ତଙ୍କୁ ନ ଦେଖି ବହୁତ ବ୍ୟସ୍ତ ହେଲା । ଏଣେ ଯେ ସମ୍ଭବ ଭୋକ ଶୋଷରେ ଛଟ୍‌ପଟ୍ ହେଉଥିଲେ ।

ବାଦଲାଭୂତ ଅନ୍ୟାନ୍ୟ ଭୂତମାନଙ୍କ ସାହାଯ୍ୟରେ ନାନାପ୍ରକାର ସୁସ୍ୱାଦୁ ଜିନିଷ ଆଣି ସେମାନଙ୍କ ପାଖରେ ଥୋଇ ରଖିଦେଲା । ସେମାନେ ଖାଇବାକୁ ବସିଲା କ୍ଷଣି ବାଦଲା ଗୋଟିଏ ବଡ଼ ଚଣ୍ଡଭଇରବ ଚଢ଼େଇ ହୋଇ ଆସି ସେ ଖାଦ୍ୟ ଉପରେ ବସି ଏପରି ଡେଣା ହଲାଇଲା ଯେ ସବୁ ଖାଦ୍ୟ ଉଡ଼ିଗଲା । ସେମାନେ ଚଢ଼େଇକୁ ମାରିବାକୁ ଖଣ୍ଡା କାଢ଼ି ବସିଲେ, ମାତ୍ର ସୁଜନଙ୍କ ମନ୍ତ୍ରରେ ହାତ ଉଠିଲା ନାହିଁ । ସେ ଚଢ଼େଇରୂପରେ ବାଦଲା କହିଲା, "ଅରେ ପାପି, ଅରେ ଦୁର୍ଜନ, ତୁମ୍ଭେମାନେ ସୁଜନଙ୍କୁ ଯେଉଁପରି ଦୁର୍ଦ୍ଦଶା କରିଛ ସେପରି ଫଳ ପାଉଛ । ଜାଣିଲ !"

GPNanda Colln., Digitized by srujanika@gmail.com

ଏହା ଶୁଣି ସମସ୍ତେ ଭୟରେ ଜଡ଼ସଡ଼ ହୋଇଗଲେ । ମାତ୍ର ମନ-ବୋଧଚଉଠାଙ୍କର ଟିକେ ଭୟ ନ ଥାଏ ।

ସେତେବେଳେ ସୁଜନ ଯାଦୁବେଶ ପିନ୍ଧି ସେଠାରେ ଦେଖା ଦେଲେ । ଢାଁସି ମହାପାତ୍ର ଓ ଦୁର୍ଜନ ସୁଜନର ଗୋଡ଼ଧରିଲେ ଏବଂ କ୍ଷମା ମାଗିଲେ ଓ ରୋକଡ଼ଚଉଠାଙ୍କୁ ନେଇ ଜମିଦାରୀର ଖାରଜ କରିବାକୁ ପ୍ରାର୍ଥନା କଲେ । ସୁଜନ କହିଲେ, "ଢାଁସି, ତୁମ୍ଭେ ମୋଠାରୁ ଛଡ଼ାଇ ନେଇଥିବା ଜମିଦାରୀକୁ ଯେତେବେଳେ ଫେରାଇ ଦେଉଛ, ମୁଁ ମଧ୍ୟ ତୁମ୍ଭକୁ ସେପରି କିଛି ଉପକାର ଦେବି । ମୋ ସଙ୍ଗେ ଆସ ।" ଏହା କହି ସୁଜନ ସେମାନଙ୍କୁ ନିଜଘରକୁ ଡାକିନେଲେ । ଢାଁସି ନିଜପୁଅ ଚନ୍ଦ୍ରକାନ୍ତକୁ ସୁନ୍ଦରୀ କମଳା ସଙ୍ଗେ ଖେଳୁଥିବା ଦେଖି କମଳାକୁ କହିଲେ, "ମା, ତୁମ୍ଭର ବାପାଙ୍କୁ ମୁଁ ବହୁତ ଦୁଃଖ ଦେଇଛି, ମୋତେ କ୍ଷମାକର ।" ଚନ୍ଦ୍ରକାନ୍ତ କହିଲା, "ବାପା, କମଳା ସଙ୍ଗେ ମୋର ବିବାହ ହେବାର ସ୍ଥିର ହୋଇଛି ।" ଏହା ଶୁଣି ଢାଁସି ଅତି ଖୁସୀ ହେଲା ।

ବାବନା ଡଙ୍ଗାଟି ନେଇ ଆସିଲା । ଆଉଦିନ ସମସ୍ତେ ଡଙ୍ଗାରେ ଚଢ଼ି ସୁଖରେ ନଦୀ ପାର ହୋଇଗଲେ । ଗୋଟିଏ ଦିନରେ ବଡ଼ ଜାକଜମକରେ ଚନ୍ଦ୍ରକାନ୍ତ ଓ କମଳାର ବିବାହ ହେଲା । ସୁଜନ ଅନେକ ଯଉତୁକ ଦେଲେ ।

ସେ ଦିନରୁ ସୁଜନ ଗୁଣିବିଦ୍ୟା ଛାଡ଼ିଦେଇ ଭଗବାନଙ୍କ ପୂଜା କରିବା ସ୍ଥିର କଲେ—ଆଉ ବାବନା ଓ ଅନ୍ୟ ଭୂତମାନଙ୍କୁ ସବୁଦିନ ପାଇଁ ମୁକ୍ତକରି ଦେଲେ । ବାବନା ଅନ୍ୟ ଭୂତମାନଙ୍କୁ ଧରି ଆନନ୍ଦରେ ବରଗଡ଼ା କୁଦକୁ ଫେରିଗଲା । ଢାଁସି

GPNanda Colln., Digitized by srujanika@gmail.com

ଗଇଁଡିଆ ପୂଅଃବାଦ୍ ଧଣ ଠେମଗ୍ ଗଲେ । ସୁଜନ ପୁଙ୍ଖଙ୍କର ଦୁର୍ଜନ ହାତରେ ଗାଆଁର ଘର ଦେଇ ନଜେ ଭଗବାନଙ୍କ ସେବା କର ଦନ କାଟିଲେ ।

---

## ୨–ଦୁଇ ଯାଆଁଳା ଜିଆର କଥା

ଆଜକୁ ଶହେ ବରଷ ହେବ ସମ୍ବଲପୁର ସହରରେ ଜଣେ ବ୍ରାହ୍ମଣ ଘରେ ଦୁଇଟି ଯାଆଁଳା ଝିଅ ଜନମ ହେଲେ । ଲଙ୍ଗ ପିନ୍ଧା ଅଲଗା ଅଲଗା ଥିଲା, କନ୍ତୁ ବାକି କଥାରେ ଦୁଇ ଝିଅ ଠିକ୍ ଠିକ୍ ଏକ ସମାନ ଥିଲେ । ସତେ ଯେପର କ ଜଣେ ଅନ୍ୟଜଣକର ଫଟୋ । ବାପ ମା ସେମାନଙ୍କର ନାଁ କମଳ ଓ କମଳା ଦେଲେ । ଯେ ସେମାନଙ୍କୁ ଦେଖେ ସେ ଖୁସୀ ହୋଇଯାଏ । ସେମାନଙ୍କୁ ଦେଖି ବାପ ମାଆଙ୍କର ପେଟ ପୂରି ଯାଉଥାଏ । କମଳ ଓ କମଳାର ବୟସ ୧୦।୧୧ ହେଲା ବେଳକୁ ବୁଢ଼ାବୁଢ଼ୀ ହଠାତ୍ କେତେଦନ ଭିତରେ ମରିଗଲେ । କମଳ ଓ କମଳାକୁ ଘରଆଡ଼ ଅନ୍ଧାର ଦଶିଲା । ସମ୍ବଲପୁରରେ ରହିବାକୁ ସେମାନଙ୍କର ମନ ମାନଲା ନାହିଁ । କାହାର ଆଖି ପଡ଼ିବ ନାହିଁ ବୋଲି କମଳା ମଧ୍ୟ କମଳପର ଲୁଗାପଟା ପିନ୍ଧେ ।

ଦନେ ମହାନଦୀରେ ପୋର ବଢ଼ି ଆସିଛି ; ଏଖଣ୍ଡି ସେଖଣ୍ଡି ପାଣି ଖାଇଛି । ଜଣେ ମହାଜନ କଟକକୁ ନେବାପାଇଁ ଗୋଟିଏ ଡଙ୍ଗାରେ ଗୁଡ଼ଜଲ ବୋଝେଇ କରୁଥାନ୍ତି । କମଳ ଓ କମଳାର ମନହେଲା ଯେ ସେମାନେ ସେ ଡଙ୍ଗାରେ ଚଢ଼ି କଟକ ଯିବେ, ଆଉ ସେଠାରେ ଦୁଃଖ କରି ଚଳିବେ । ସେମାନେ ମହାଜନଙ୍କୁ

GPNanda Colln., Digitized by srujanika@gmail.com

ସେ କଥା କହୁଥାନ୍ତି ସେ ଖୁସୀ ହୋଇ ହଁ କଲେ । ଗୁଜୁକ ଲଦା ଶେଷ ହେଲା । ମହାଜନ, କେଉଟମାନେ ଆଉ କମଳ ଓ କମଳା ସମସ୍ତେ ଚଢ଼ିଲେ । ଡଙ୍ଗା ଛାଡ଼ିଲା । ଏବେ ମହାଜନଙ୍କ ଖଣ୍ଡିକ ଖଣ୍ଡି ଖାଇଛନ୍ତି ; ତା'ପରେ ଉପରୁ ତଳକୁ ଯିବାର କଥା, ଯେପରି ପଞ୍ଜାବ ମେଲ୍ ଟ୍ରେନ୍ ପରି ଛୁଟିଲା ।

ଯୋଗ ତ, କେତେଦୂର ଗଲା ପରି, ପଥରଟରେ ବାଜି ଡଙ୍ଗାଟି ଭାଙ୍ଗିଗଲା । ଡଙ୍ଗାରେ ଚଢ଼ିଥିବା ଲୋକେ ଛନ୍ନ ଛତର ହୋଇଗଲେ । ମହାଜନ କମଳାକୁ ଧରି ଦ୍ୱୀପରେ ପହଞ୍ଚିଲେ । ସେତେବେଳେ ଦ୍ୱୀପରେ ସାଧୁଚରଣ ପଟ୍ଟନାୟକ ବୋଲି ଜଣେ ଜବରଦସ୍ତ ଜମିଦାର ଥିଲେ । କମଳାର ଚେହେରା ଦେଖି ଓ ମହାଜନଠାରୁ ତାର ଦୁଃଖ କାହାଣି ଶୁଣି ତାକୁ ଘରେ ଚାକର କରି ରଖିବାକୁ ସେ ମହାଜନକୁ କହିଲେ । ମହାଜନ ଆନନ୍ଦରେ ରାଜି ହେଲା । ତାର ନାଁ କମଳ ବୋଲି ସାଧୁଚରଣଙ୍କୁ କହିଥାଏ । କମଳ କାମ କରିବାକୁ ସବୁବେଳେ ହାଜର, ମଧୁର କଥା, ସାଧାସିଧା ବେଭାର, କୌଣସି କଥାରେ ତାର ଭେଦ ନାହିଁ । କମ୍ ଦିନରେ କମଳକୁ ସାଧୁଚରଣ ବହୁତ ଭଲ ପାଇବାକୁ ଲାଗିଲେ । ତାଙ୍କର ଲୁଗା କାଚିବା ଦରକାର ହେଲେ କମଳ ସାବୁନ ଲଗାଇ କାଚିବ, ପାନ ଦରକାର ହେଲେ କମଳ ଭାଙ୍ଗି ଆଣିବ, ଗୁପ୍ତ ଖବର ଦେବାର ହେଲେ କମଳ ଖବର ନେଇଯିବ ।

ସେହି ଦ୍ୱୀପରେ ଗୋଟିଏ ମା ବାପ ଛେଉଣ୍ଡ ଝିଅ ଥାଏ । ତାର ନା ରମା । ତାର ବାପା ସମୁଦ୍ର ବନ୍ଦରର ଅଚଳାଚଳ ଧନ ରଖି ଦେଇଛନ୍ତି । ଗୋଟିଏ ବୋଲି ଝିଅ—କେତେ ଭୋଗ କରିବ କହୁ । ସମୁଦ୍ର ବନ୍ଦରର ଓ ତାଙ୍କର ସ୍ତ୍ରୀ ତିଲୋତ୍ତମା ପୁଣି ରଥଯାତ୍ର

GPNanda Colln., Digitized by srujanika@gmail.com

ଦେଖିବାକୁ ଯାଇଥିଲେ । ବାଟରେ ଡଉଜାରେ ମରିଗଲେ । ଔଷଧ କିଣିବାକୁ ରମାକୁ ଛାଡ଼ି ଯାଇଥିଲେ । କୋହଲେ ବଂଶ ବୁଡ଼ି ଯାଇଥାନ୍ତା । ରମାର ଧନ ଯେତେ ଯେପରି ଥିଲେ ବି ଦୁଃଖ ନାହିଁ, ତାଙ୍କ ରୂପ ଯେତେ ତାହା ବି ଦେଖିବା ଦେବ ନାହିଁ ।

ସାଧୁଚରଣ ରମାର ଅପୂର୍ବ ରୂପ ଯଉବନ ଦେଖି ଆଉ ସମ୍ଭାଳ ହୋଇ ରହି ପାରିଲେ ନାହିଁ । ବିବାହ କରିବାପାଇଁ ତା ପାଖକୁ ଅନେକଥର ସେ କଥା ପଠାଇଲେଣି । ମାତ୍ର ରମା ରାଜି ନ ହୋଇ ମୁହଁ ମୋଡ଼ି ଦେଉଥାଏ । ସାଧୁଚରଣ ପୁଣି ବିବାହପାଇଁ ପତ୍ର ଲେଖି ବିମଳହାତରେ ରମାପାଖକୁ ପଠାଇଲେ । ଜମିଦାରଙ୍କୁ ଚିଠି ଦେବାପାଇଁ ବିମଳ ରମାକୁ ନାନାପ୍ରକାରେ ବୁଝାଇ ବସିଲା । ତାର ସୁନ୍ଦର ଚେହେରା, ମଧୁରକଥା, ଯଉବନ ବୟସ ଦେଖି ରମା ତାକୁ ବିବାହ କରିବାପାଇଁ ଏକପ୍ରକାର ସ୍ଥିର କଲା ।

ସେ ଗାଆଁରେ ଗଉରୀଶଙ୍କର ସାହାଣି ବୋଲି ଜଣେ ଗୁଣ୍ଡାଶ୍ରେଣୀର ଯୁବକ ଥାଏ । ରମାର ଦଳା ଗୋପାଳ ବନ୍ଧୁହାର ଶଙ୍କରଙ୍କୁ ବିଭା କରିବାପାଇଁ ରମାକୁ ବାରମ୍ବାର କହୁଥାନ୍ତି ; ମାତ୍ର ରମା ନାହିଁ କରୁଥାଏ । ରମା ସାଧୁଚରଣ ବା ଗଉରୀଶଙ୍କର କାହାକୁ ବିବାହ ନ କରି ଗରିବଂଶଆର ସ୍କୁଲର ବିମଳକୁ ବିବାହ କରିବାପାଇଁ ମନ କରୁଥିବା ଦେଖି ଗୋପାଳ ଗଉରୀଶଙ୍କରଙ୍କୁ କହିଲା, "ତୋ ସଙ୍ଗେ ଲଢ଼ାଇ କରିବାକୁ ବିମଳକୁ ଡାକ । ରାଜି ହେବ ତ ପେଟରେ ମାରିଦେବୁ, ପାପ ଯିବ । ଯଦି ରାଜି ନ ହେବ ତେବେ ଡରୁଆ ନପୁଂସକ ବୋଲି ରମାକୁ କହିବ ଯେ ବିମଳ ଆଡ଼କୁ ତାର ମନ ଫାଟିଯିବ ଓ ତୋତେ ବିବାହ କରିବ ।" ଗୋପାଳର ଶିଖାଣିରେ ଗଉରୀଶଙ୍କର ଟିକ୍ ଶୀତଳଷଷ୍ଠୀଦିନ ବିମଳ ରମାଘରକୁ ଯାଉଥିଲା ବେଳେ ତାକୁ ଲଢ଼େଇ କରିବାକୁ ଡାକିଲା ।

GPNanda Colln., Digitized by srujanika@gmail.com

କମଳକୁ ଧମାର ରାମରତନ ପ୍ରଧାନ ବୋଲି ଜଣେ ଲୋକ ନଦୀରୁ ଉଦ୍ଧାର କରି ରଖିଥିଲା । ରାମରତନ ତାଙ୍କୁ ବହୁତ ସ୍ନେହ କରୁଥିଲା । ସେ ଯାହା କହେ ରାମରତନ ତାହା କରିବାକୁ ବାଧ୍ୟ ହୁଏ । ହୁମାର ଶୀତଳଷଷ୍ଠୀ ଦେଖିଯିବାକୁ କମଳ ରାମରତନ ଆଗରେ ଅଳି କଲା । ରାମରତନ ହୁମା ଜମିଦାରର ଗୋଟିଏ ଲୋକକୁ ମାରିଦେଇ ଧମା ପଳାଇ ଆସିଥିଲା । ସେ କମଳକୁ କହିଲା "ବାବୁ, ହୁମାର ଜମିଦାର ମୋର ବଇରୀ । ମୋତେ ଦେଖିଲା କ୍ଷଣି ସେ ବାନ୍ଧି ପକାଇବ । ତେଣୁ ମୁଁ ବସ୍ତିକୁ ଯିବି ନାହିଁ । ମୁଁ ବସ୍ତିବାହାରେ ଥିବି । ତୁ ଯାତ୍ରା ଦେଖି ଶୀଘ୍ର ଫେରି ଆସିବୁ ।" କମଳ ରାଜି ହେଲା । ଦୁହେଁ ହୁମା ଗଲେ । ରାମରତନ ଗାଁ ବାହାରେ ବସିଥାଏ । କମଳ ଟଙ୍କାପଇସା ଧରି ବସ୍ତି ଭିତରକୁ ଶୀତଳଷଷ୍ଠୀ ଯାତ୍ରା ଦେଖିବାକୁ ଗଲା । ସେ ଫେରିବାରେ ବିଳମ୍ବ କରିବାରୁ ବିପଦରେ ପଡ଼ିଲା ବୋଲି ଭାବି ରାମରତନ ନିଜେ ବସ୍ତିକୁ ଗଲା । ଦେଖିଲା ଯେ କମଳା ତାଠାରୁ ବଡ଼ ଗୁଣ୍ଡା ସଙ୍ଗେ ଲଢ଼େଇ କରୁଛି ଓ ଅନେକ ଲୋକ ଚାରିଆଡ଼େ ଜମା ହୋଇ ଦେଖୁଛନ୍ତି । ସେ କମଳାକୁ ରକ୍ଷା କରିବା ପାଇଁ ନିଜର ଖଣ୍ଡା ଉଠାଇଲା । ଲଢ଼େଇ ବନ୍ଦ ହେଲା । ସମସ୍ତେ ରାମରତନକୁ ଗ୍ରେପ୍ତାର କରି ନେଲେ । ଏଣେ କମଳା ଅସଲ ବିମଳ । ସେ ଜମିଦାର ଘରକୁ ଚାଲିଗଲା ଓ ସବୁକଥା ଜମିଦାରଙ୍କୁ କହିଲା ।

ସେ ଆଡ଼େ କମଳ ତ ବସ୍ତି ବୁଲି ବୁଲି ଯାତ୍ରା ଦେଖୁଥିଲା । ରମାଘରର ବାଟ ଗଳିରେ ଗଲାବେଳେ ତା ଉପରେ ରମାର ଆଖି ପଡ଼ିଲା । କମଳର ଆଖି ମଧ୍ୟ ରମା ଉପରେ ପଡ଼ିଲା । କମଳ ଏଡ଼େ ସୁନ୍ଦର ଯୁବକ ; ରମା ସୁନ୍ଦରୀ ଯୁବତୀ । କମଳ ଟିକିଏ ଅଟକି ଗଲା ।

GPNanda Colln., Digitized by srujanika@gmail.com

ରମା ପୂର୍ବପରିଚିତ କମଳ ବୋଲି ତାକୁ ଘରକୁ ଅଦରରେ ଡାକନେଲ । ସୁନ୍ଦର ଯୁବକର ଆଦରପାଇ କମଳ ବିନା ଆପତ୍ତିରେ ଘରଭିତରକୁ ଯାଇ ଘରର ଠାଟବାଟ ଦେଖି ମୋହିତ ହୋଇଗଲା । ସେତେବେଳେ କମଳ ମୋର ହାତକୁ ଆସିଲା ବୋଲି ରମା କମଳ ଆଗରେ ବିବାହ ପ୍ରସ୍ତାବ କଲା । କମଳ ମଧ୍ୟ ଧନୀ ସୁନ୍ଦର ଯୁବକ ଦେଖି କହିଲେ " ଶୁଭସ୍ୟ ଶୀଘ୍ରଂ ।" ରମା ସେକ୍ଷଣି ଜଣେ ପୁରୋହିତକୁ ଡକାଇ ବିବାହ କାର୍ଯ୍ୟ ଶେଷ କରାଇଲା ।

ଏଣେ ଶୀତଳଷଷ୍ଠୀ ବା ଶିବପାର୍ବତୀ ବିବାହ ଉତ୍ସବରେ ଧୁମା ଟଳମଳ ହେଉଛି—ତହିଁକି କମଳ ଓ ରମାର ବିବାହ ଉତ୍ସବରେ ସେ ଦୁହିଁଙ୍କ ମନ ଟଳମଳ ହେଉଛି— କିଛିକ୍ଷଣ ହସାହସି ହୁଅଖୋଇ, ଖିଆଲି ମସ୍ତୁଲ ହେଲା ପରେ କମଳର ବୃନ୍ଦାବନ କଥା ମନେ ପଡ଼ିଲା । ସେ ଯାହା ଦେଖିଯିବା ବାହାନାରେ ଘରୁ ବାହାରି ପଡ଼ିଲା ଓ ବୃନ୍ଦାବନ ଅପେକ୍ଷା କରିଥିବା ଜାଗାକୁ ଗଲା—-ମାତ୍ର ତାହାକୁ ସେଠାରେ ନ ଦେଖି କମଳ ଯାହାଭିତରେ ତାହାକୁ ଖୋଜିବାକୁ ଲାଗିଲା ।

ସାଧୁଚରଣ ଗର୍ଜିଉଆ କମଳକୁ ଧରି ରମାଘରକୁ ବାହାରିଲା ଶେଷଥର ପାଇଁ ବିବାହ ପ୍ରସ୍ତାବରେ ରାଜି କରାଇବାକୁ । ସେମାନେ ରମାଘର ଦୁଆର ମୁହଁକୁ ଗଲାବେଳେ ଲୋକମାନେ ବୃନ୍ଦାବନକୁ ଗିରଫ କରି ଆଗରେ ଠିଆକରାଇ କହିଲେ, "ହଜୁର—ଏ ସେ ବୃନ୍ଦାବନ ଯେ ଆପଣଙ୍କ ଗୁଡ଼ରକୁ ମାରି ପକାଇଥିଲା ।" କମଳ ବୃନ୍ଦାବନକୁ ଦେଖାଇ କହିଲା, "ଆଜ୍ଞା, ଏହି ଭଦ୍ରଲୋକ ମୋତେ ଗୁଣ୍ଡା ଙ୍କର ହାତରୁ ରକ୍ଷା କରିଥିଲେ ।" ବୃନ୍ଦାବନ କମଳକୁ

GPNanda Colln., Digitized by srujanika@gmail.com

ଅମଳ ସତ କହିଲା, "ତୁ ବଡ଼ ନିମକହାରାମ—ତୋତେ ନିଆଁରୁ ରକ୍ଷାକରି କେତେ ଆଦରରେ ରଖିଲି—ଏବେ ମୋର ଟଙ୍କାମୁଣା ଧରି ଗଉଁତିଆର ପଟୁଆ ହୋଇ ବାହାଦୁରି ନେଉଛୁ।" ଗୋଳମାଳ ଶୁଣି ରମା ଘରଭିତରୁ ବାହାରି ଅମଳକୁ କମଳ ସତ କହିଲା, "ସେ ମୋର ପତି—ଏଥିର ସାକ୍ଷୀ ପୁରୋହିତ। ତାଙ୍କୁ ମୋର ପାଖକୁ ଛାଡ଼ିଦିଅ।" ପୁରୋହିତ ବି ସେଠାରେ ଥିଲେ। ସେ ମୋର କଥାକୁ ସମର୍ଥନ କଲେ। ଏ ସବୁ ଢଂଗରଂଗ ଦେଖି ସାଧୁଚରଣ ବିରକ୍ତ ହୋଇ ଫେରି ଯାଉଥିଲେ। ଠିକ୍ ସେତିକିବେଳେ କମଳ ସମରଜିତକୁ ଖୋଜି ଖୋଜି ହଇରାଣ ହୋଇ ଫେରିଲା—ସେ ତାର ସ୍ତ୍ରୀ ରମାକୁ ଦେଖି ସଂବର୍ଦ୍ଧନା କଲା। ସମରଜିତକୁ କ୍ଷମା ମାଗିଲା।

ଅମଳ ସେତେବେଳେ ନିଜ ପୋଷାକ ବଦଳେଇ ଦେଇ କମଳା ବେଶ ଧରିଲା—କମଳ ନିଜ ଭଉଣୀ କମଳାକୁ ପାଇଁଥିବା ଦେଖି ବହୁତ ଖୁସି ହେଲା। ସାଧୁଚରଣ ଗଉଁତିଆ କମଳାକୁ ବିବାହ କରି ସମରଜିତକୁ ମୁକୁଳେଇ ଦେଲା। ସମସ୍ତେ ତୃପ୍ତି ହେଲେ।



## ସବୁଯୁଗେ ସତ୍ୟର ଜୟ

ଆଜି ଦଶହରା ପୂଜା—ଟେରମଣ୍ଡା ଗାଁ ଟଳଟଳ ହେଉଛି। ମା ସମଲେଶ୍ୱରୀଙ୍କ ପର୍ବଦିନ। ବାସୁଦେବ ଜମିଦାରଙ୍କୁ ଆଜି ଫୁରୁସତ୍ ନାହିଁ। ମନ୍ଦିରର ବନ୍ଦୋବସ୍ତ କରିବାରେ ଯେପରି ବ୍ୟସ୍ତ ରହିବାକୁ ପଡୁଛି, ଘରର ବନ୍ଦୋବସ୍ତ କରିବାକୁ ମଧ୍ୟ ସେପରି ହରବର ପଡୁଛି। ଦଶହରା ପୂଜା ଯାତ୍ରା ଦେଖିବାକୁ ତାଙ୍କ ଘରେ ଅନେକ

GPNanda Colln., Digitized by srujanika@gmail.com

କୁଣିଆଁ ଜମା ହୋଇଛନ୍ତି । ବିଶେଷ କରି ତାଙ୍କର ପ୍ରାଣର ବନ୍ଧୁ
ଜନାଗଡ଼ା ଜମିଦାର ମଦନ ମୋହନ ସାହୁ ମଧ୍ୟ ଆସିଛନ୍ତି ।
ବାସୁଦେବର ମଦନମୋହନଙ୍କ ଭିତରେ ଏତେ ଟାଣ ବନ୍ଧୁତା ଯେ
ବାସୁଦେବଙ୍କ ସ୍ତ୍ରୀ ବିମଳା ନିଜେ ମଦନମୋହନଙ୍କ ଖିଆପିଆ
ବନ୍ଦୋବସ୍ତ କରନ୍ତି । ସେପରି ମଦନମୋହନଙ୍କ ସ୍ତ୍ରୀ ମାଳତୀ
ବାସୁଦେବଙ୍କୁ ଦେଖିଲେ ଓଢ଼ଣାଟାଣି ଲୁଚନ୍ତି ନାହିଁ ।

ପୂଜାଯାତ୍ରା ଶେଷ ହେଲା । କୁଣିଆଁମାନେ ଯେ ଯାହାଘରକୁ
ଗଲେ—ମଦନ ମୋହନ ଜମିଦାର ମଧ୍ୟ ଜାପଡ଼ା ଯିବାକୁ ମିତ ଓ
ମିତୁଣୀଙ୍କଠାରୁ ବିଦାୟ ନେବାକୁ ଆସିଲେ । ବାସୁଦେବ
କହିଲେ, "ମିତ, ପୂଜା ଯାତ୍ରାର ଜଞ୍ଜାଳ ଭିତରେ ଶାନ୍ତି ହୋଇ
ତୁମ୍ଭ ସଙ୍ଗେ ଟିକିଏ ବସାଉଠା, କଥାବାର୍ତ୍ତା କିଛି କରି ହୋଇନାହିଁ,
ଦିନା କେତେ ରହ । ଏତେ ତରବର କାହିଁକି ?"ମଦନମୋହନ
କହିଲେ, "ନାହିଁ ମିତ । ଘରେ ବହୁତ କାମ ବାକି ପଡ଼ିଛି—ତୁମେ
ଦୁଃଖମନା ହେବ ବୋଲି ଡରେଁ ଆସିଥିଲି । ନ ଗଲେ ନ ଚଳେ ।"
ବାସୁଦେବ ଯେତେ ରହିବାକୁ ଅନୁରୋଧ କଲେ ମଦନମୋହନ
ନାହିଁ କଲେ । ତହୁଁ ବାସୁଦେବ ତାଙ୍କ ସ୍ତ୍ରୀ ବିମଳାଙ୍କୁ କହିଲେ,
"ହଇରୋ, ମୋର କଥା ତ ମିତ କାଟିଦେଲେ, ତୁମେ ଥରେ କହି-
ଦେଖ ତ ଦିନାକେତେ ରହିବାକୁ ।"ବରଙ୍କ ଆଦେଶ ପାଇ ବିମଳା
କହିଲେ, "ହଇଗୋ ବାବୁର ବାପା, ଆମ୍ଭର ଘରେ ତୁମ୍ଭର କଣ
ଅସୁବିଧା ହେଉଛି ଯେ ଏତେ ତରବର ହୋଇ ବାହାରି ବସୁଛ ?
ତୁମ୍ଭର ମିତ ତ ପୂଜା ଯାତ୍ରା ଲାଗି ତରବର ହେଉଥିଲେ ଯେ ତୁମ୍ଭର
ସଙ୍ଗେ ଠାଏ ବସି ପାରିନାହାନ୍ତି, ବି ଧସିକରି କଥାଟେ ହେଇ ପାରି
ନାହାନ୍ତି । ଆଜ ଦିନ କେତେ ରହି ଗଲେ ମୋର ମାଳତୀ ନାନୀ କଣ
ଫାସୀ ଦେଇ ଦେବ ?" ମଦନମୋହନ କହିଲେ "ଏତେବୁଝିଲୁ ଯଦି

GPNanda Colln., Digitized by srujanika@gmail.com

କଥାଯାଉଛୁ ତେବେ କିଛୁ ଧନ ରହିଯାଉଛୁ, ବୋଲି ବାଧ୍ୟ ହୋଇ ରହିଗଲେ । ବାସୁଦେବ ଜମିଦାରଙ୍କ ଗୋପାଳ ସୁନ୍ଦର ବୋଲି ଗୋଟିଏ ପୁଅ—ଯେପରି ସୁନ୍ଦର ସେପରି ସରଳ ଓ ସୁଶୀଳ । "ମିତବାପା" "ମିତବାପା" ବୋଲି ସେ ମଦନମୋହନଙ୍କ ସଙ୍ଗେ ବରାବର ଲାଗିଥାଏ । ବିମଳା ଯେ ଠିକ୍ ସମୟ ଜାଣି ମଦନ-ମୋହନଙ୍କ ଗାଧୋଇବା, ଖାଇବା, ପିଇବା ଆଦି ସବୁକଥାରେ ବ୍ୟବସ୍ଥା କରୁଥାନ୍ତି । ବିମଳା ଭାବିଲେ ଯେତେବେଳେ କିହିବୁଲି କରି ଜନାପଡ଼ା ଜମିଦାରଙ୍କୁ ସେ ରଖାଇଛନ୍ତି, ତାଙ୍କର କୌଣସି ବିଷୟରେ ଅସୁବିଧା ନ ହେବା ଉଚିତ ଓ ସେଥିରେ ତାଙ୍କର ନିନ୍ଦା ନ ହେଉ ।

"ଦଇବ ଦଉଡ଼ି ମଣିଷ ଗାଈ, ଯେଣିକି ଓଟାରେ ତେଣିକି ଯାଇ ।" ବାସୁଦେବଙ୍କ କପାଳେ ତ ତେଣିକି ଦୁଃଖଭୋଗ ଥାଏ, କିଏ ଅନ୍ୟଥା କରନ୍ତା ? ସେ କହିବାରୁ ମଦନମୋହନ ନାହିଁ କଲେ, ଅଥଚ ବିମଳା କହିବାରୁ ସେ କହିଲେ, ଏହି କଥାନେଇ ତାଙ୍କ-ମନରେ ବହୁତ ଗଣ୍ଡାଗଣ୍ଡି ହେଲା, ସେ ଭାବିଲେ ଯେ ମଦନ ମୋହନ ଓ ବିମଳା ଭିତରେ ବୋଧହୁଏ ଗୁପତ ସ୍ନେହ ଅଛି । ମଦନମୋହନଙ୍କ ଖାଇବା ପିଇବାରେ ବିମଳା ବିଶେଷ ଯତନ କରୁଥିବା ଦେଖି ବାସୁଦେବଙ୍କ ମନରେ ଦୁଇଗୁଣ ସନ୍ଦେହ ହେଲା । ମଦନମୋହନଙ୍କୁ ବିଷଦେଇ ମାରିବାକୁ ଠିକ୍‌କରି ତାଙ୍କର ଜଣେ ବିଶ୍ୱାସୀ ସଦାବ୍ରତୀ ସଙ୍ଗୀ ଯଶୋବନ୍ତଙ୍କୁ ଏ କାମରି ଭାର ଦେଲେ । ଯଶୋବନ୍ତ ନିର୍ଦ୍ଦୋଷ ମଦନମୋହନଙ୍କୁ ବିଷଦେବା ଦୂରେ ଥାଉ, ତାଙ୍କ ପାଖକୁ ଯାଇ ସବୁକଥା କହିଲେ ଓ ଦୁହେଁଯାକ ତେଁତେଲି କାନ ଆଡ଼କୁ ବୁଲି ଯାଉଥିବା ବାହାନାରେ ଜନାପଡ଼ା ଛାଡ଼ିଗଲେ ।

GPNanda Colln., Digitized by srujanika@gmail.com

ସେମାନଙ୍କର ପଳାଇଯିବା ଖବରପାଇ ବାସୁଦେବଙ୍କ ରାଗ ବେଶୀ ହେଲା ମଦନମୋହନ ଓ କମଳା ଉପରେ । ସେ କମଳା ପାଖକୁ ରାଗରେ ଗଲେ, ସେତେବେଳେ ଗୋପାଳ ସୁନ୍ଦର ଓ ତାର ମା ଦାସୀ ଚାକରମାନଙ୍କ ଆଗରେ ଗୋଟିଏ ଭୂତପ୍ରେତ ଗପ କହି ହସାଉଥିଲା ; ବାସୁଦେବ ରାଗରେ ତମତମ ହୋଇ କମଳାକୁ ଯାହା ତାହା ଗାଳିଦେଇ ବନ୍ଦୀକରି ରଖିଲେ । ଏହା ଦେଖି ତାଙ୍କ ପୁଅ ଗୋପାଳ ସୁନ୍ଦରର ଏତେ ଦୁଃଖ ହେଲା ଯେ, ସେ କିଛି ନ ଖାଇ ନ ପିଇ ଧୀରେ ଧୀରେ ଶୁଖି ଯିବାକୁ ଲାଗିଲା । ତଥାପି ସେ ଆଡ଼କୁ ବାସୁଦେବଙ୍କ ନଜର ନାହିଁ । ସେ ଦୁଇଜଣ ଭଦ୍ରଲୋକଙ୍କୁ କୁରୁଆଁ ମାହେଶ୍ୱରୀଗଡ଼କୁ ପଠାଇଲେ ଯେ ସେମାନେ ସେଠାରୁବୁଝି-ଆସିବେ କମଳା ସତୀ କି ନାହିଁ ।

ଏପାଖେ ବନ୍ଦୀଘରେ କମଳାର ଗୋଟିଏ ସୁନ୍ଦରଝିଅ ଜନମ ହେଲା । ତାହା ଶୁଣି ଅନେକ ବଡ଼ଘର ସ୍ତ୍ରୀଲୋକମାନେ ଦେଖି ଆସିଲେ । ଚଞ୍ଚଳା ବୋଲି ଜଣେ ସ୍ତ୍ରୀଲୋକ ସେ ଝିଅକୁ ଜମିଦାରଙ୍କୁ ଦେଖାଇଲେ, ତାଙ୍କର ରାଗ ମେଣ୍ଟିଯିବ ଭାବି ତାକୁ ଜମିଦାରଙ୍କ ପାଖକୁ ନେଇଗଲା । ଜମିଦାର ଛୁଆକୁ ଦେଖି ଚଞ୍ଚଳାକୁ ରାଗଆଖିରେ ଦେଖିବାରୁ ଚଞ୍ଚଳା ଛୁଆକୁ ସେଠାରେ ତଳେ ରଖିଦେଇ ଘରକୁ ଚାଲିଗଲା । ଚଞ୍ଚଳାର ବର ଶୁକଦେବ ସେଠାରେ ଥିଲା । ଜମିଦାର ଶୁକଦେବକୁ କହିଲେ, "ଯା ଏଇଟାକୁ ନେଇ ପୋଡ଼ାଇ ମାରିଦିଅ ।" ଜମିଦାର ରାଗହୋଇ ଏତେ ନିଷ୍ଠୁର କାମ କାହିଁକି କରୁ-ଛନ୍ତି ବୋଲି ଶୁକଦେବ କହିବାରୁ ଜମିଦାର କହିଲେ "ଆଚ୍ଛା, ତାକୁ ନେଇ ଯାଇ ଦଣ୍ଡାନଦୀ ଖଣ୍ଡିରେ ଜଙ୍ଗଲିଆ ଜାଗାରେ ପକାଇ ଦେଇ ଆସ ଯେ ସେଠାରେ ଖାଇବାକୁ ନ ପାଇ ଶୀତ କାକରରେ ଆପେ ଆପେ ମରିଯିବ ।" ଶୁକଦେବ ଜମିଦାରଙ୍କ ଆଦେଶରେ ଛୁଆକୁ ଧରି ଚାଲିଗଲା ।

GPNanda Colln., Digitized by srujanika@gmail.com

ଏଣେ ଜମିଦାର ଗାଆଁର ପାଞ୍ଚଜଣ ଭଦ୍ରଲୋକଙ୍କୁ ଡକାଇ ନିଜସ୍ତ୍ରୀ କମଳାର ଦୋଷାଦୋଷ ବିଚାର କରିବସିଲେ । କମଳା ଅନେକ ଜାକୁତି ବିନତି କରି କହିଲା, "ଧର୍ମାବତାର, ଦୟାକର, ମୋର ବର୍ତ୍ତମାନ ଅବସ୍ଥା ଦେଖ—ଏକେ ତ ଦୁର୍ବଳ ହୋଇଛି ତହିଁକି ମୋର ଜଣେ ଛୁଆକୁ ମୋଠାରୁ ଛଡ଼ାଇ ନେଇଥିବାରୁ ମୋର ଛାତି ଫାଟି-ଯାଉଛି । ଫେର୍ ମୋର ପୁଅ ଗୋପାଳ ସୁନ୍ଦରକୁ ମଧ୍ୟ ଦେଖି-ବାକୁ ନ ଦେବାରୁ ମୋର ହାଡ଼ ଭାଙ୍ଗି ଯାଉଛି ।" ଠିକ୍ ସେତେବେଳେ କୁଆଡ଼ୁ ଭଦ୍ରଲୋକ ଦୁଇଜଣ ଫେରି ଗୋଟିଏ ବନ୍ଦ ହୋଇଥିବା ଲଫାଫା ଜମିଦାର ହାତକୁ ବଢ଼ାଇ ଦେଲେ । ଜମିଦାର ଲଫାଫା ଖୋଲି ପଢ଼ିଲେ ଯେ ସେଥିରେ ଲେଖାଥିଲା କମଳା ସତୀ, ମଦନ, ମୋହନ ନିର୍ଦ୍ଦୋଷ, ଯଶୋଦ୍ୱା ସତୀ ଚାକର—ବାସୁଦେବ ଅହଂକାରୀ, ଅତ୍ୟାଚାରୀ—ହଜିଲା ଜିନିଷକୁ ଖୋଜି ନ ପାରିଲେ ଜମିଦାର ବଂଶ ବୁଡ଼ିବ ।" ଠିକ୍ ସେତେବେଳେ ଗୋଟିଏ ଚାକର ଆସି କହିଲା, "ଜମିଦାର ହଜୁରଙ୍କ ପୁଅ ଚାଲିଗଲେ ।" ଜମିଦାର ପଚାରିଲେ,"କଅଣ, କେଉଁଠାକୁ" ? ଚାକର କହିଲା, "ମରିଗଲେ, ଏକେ ତ ବେମାରରେ ସଢ଼ି ସଢ଼ି ଦୁର୍ବଳ ହୋଇ ଯାଇଥିଲେ । ତାଙ୍କର ମା'କୁ ପାଞ୍ଚଜଣଙ୍କ ଆଗକୁ ଡାକି ବିଚାର କରା-ଯାଉଛି ଶୁଣି ଦୁଃଖରେ ମରିଗଲେ ।" ଏହା ଶୁଣି କମଳା ଛଳଛଳ ଆଖି ତେଣିଦେଲେ । ଚଞ୍ଚଳା ଆଗକୁ ଦଉଡ଼ିଆସି "ଜମିଦାରଙ୍କ ସ୍ତ୍ରୀ ମରିଗଲେଣି, ପୁଅର ମଲା ଖବର ଶୁଣିବାରୁ ତାଙ୍କର ଏ ଦଶା ହେଲା" ବୋଲି କହିବାରୁ ଜମିଦାର ପୁଅପାଇଁ ବଡ଼ ଦୁଃଖିତ-ହେଲେ ଓ ଚଞ୍ଚଳାକୁ କହିଲେ, "ଏ ମୋ ସ୍ତ୍ରୀକୁ ନେଇଯାଅ, ମୂର୍ଚ୍ଛା ହୋଇଛି ସିନା ।"

GPNanda Colln., Digitized by srujanika@gmail.com

ଚଞ୍ଚଳା କମଳାକୁ ନିଜ ଘରକୁ ନେଇଗଲା ଓ ବହୁଡ଼ିଆସି ଗଜଁତିଆଙ୍କୁ କହିଲା “ତୁମ ସ୍ତ୍ରୀ ମରିଗଲେ ଓ ନିର୍ଦ୍ଦୋଷ ପ୍ରାଣୀର ହତ୍ୟାଦୋଷରେ ତୁମ୍ଭଙ୍କୁ କଠିନ ଦଣ୍ଡ ଭୋଗ କରିବାକୁ ପଡ଼ିବ।” ସେ ପାଖେ ଶୁକଦେବକୁ ତାଙ୍କର କଅଁଳା ଝିଅକୁ ନେଇ ନିଛାଟିଆ ଜାଗାରେ ଦନ୍ତା ଖଣ୍ଡିରେ ଫିଙ୍ଗିଦେଇ ଆସିବାକୁ ପଠାଇଥିଲେ । ସେ ନ ଫେରିବାରୁ ଝିଅଟି ମଧ୍ୟ ମରିଗଲା ବୋଲି ଭାବିଲେ, ଏପରି ତିନି ତିନିଜଣ ନିର୍ଦ୍ଦୋଷୀ ପ୍ରାଣୀର ହତ୍ୟାର ମୂଳ ସେ ନିଜେ ଭାବି ବାସୁଦେବ ଏପରି ଦୁଃଖ ଓ ଚିନ୍ତାରେ ଜର୍ଜରି ହେଲେ ଯେ ୧୬ ବର୍ଷ କାଳ ଘର ଭିତରେ ରହି କନ୍ଦାକଟା କରି କାଳ କଟାଇବାକୁ ଲାଗିଲେ ।

ହଁ, ଶୁକଦେବ କମଳାଙ୍କ କଅଁଳାଝିଅକୁ ନେଇ ଦନ୍ତା ଖଣ୍ଡିର ନିଛାଟିଆ ପଥର ଭିତରେ ଶୁଆଇ ଦେଲା—ତାର ପିନ୍ଧା-କୁରୁତାରେ ‘ସୁଷମା’ ବୋଲି ଲେଖା ଥିବା ଖଣ୍ଡେ କାଗଜ କଣ୍ଟାରେ ଲଟକାଇ ଦେଲା ; ଟଙ୍କା ଅଳଙ୍କାର ଭରା ଗୋଟିଏ ସୁନେଲି ଫରୁଆ ପାଖରେ ରଖିଦେଲା ଓ ପଳାଇ ଯାଉଥିଲା । ପଛଆଡ଼ୁ ଗୋଟିଏ ଭାଲୁଆସି ଶୁକଦେବକୁ ଚିରି ଫାଡ଼ି ମାରି ପକାଇଲା । ଟିକିଏ ବେଳ ଯାଇଛି କି ନ ଯାଇଛି କୁରୁଆଁର ଦୁଇଜଣ ବାପପୁଅ ସେମାନଙ୍କର ଦୁଇଟା ମେଣ୍ଢା ଖୋଜି ଖୋଜି ସେ ଜାଗାକୁ ଗଲେ ଓ ସେଠାରେ ଗୋଟିଏ ମନୁଷ୍ୟ ପିଲା କାନ୍ଦୁଥିବାର ଶୁଣି ପାଖକୁ ଗଲେ । ଝିଅଟି ଦେବକନ୍ୟାପରି ଦିଶୁଥାଏ ଓ ତାର ପାଖରେ ଅନେକଗୁଡ଼ିଏ ବଡ଼ିଆ ବଡ଼ିଆ ଅଳଙ୍କାର ରଖାହୋଇ ଥାଏ । ତାହାଦେଖି ବୁଢ଼ା ପୁଅକୁ କହିଲା, “ବାବୁ, ଦେବତାମାନେ ଆଜି ଆମକୁ ଧନୀ କରିଦେଲେଣି—ଚାଲ, କୁନିକୁ ଧରି ଘରକୁ

GPNanda Colln., Digitized by srujanika@gmail.com

ଯିବା ।” ବାପ ପୁଅ ସୁଷମାକୁ ଧରି ଘରକୁ ଗଲେ ; ଆଜ୍ଞ ଆନନ୍ଦରେ ଅଳଙ୍କାର ଯାକ ଦେଖିଲେ, କେତେ ଟଙ୍କା, ସୁନା, ହୀରା, ମୋତି ମାଣିକ୍ୟ ଦେଖି ଭାବିଲେ, “ଏଠାରେ ଥିଲେ, ଲୋକମାନେ ଆମ୍ଭର ଏଠାରୁ ଥିବା ହେବାର ଜାଣି କେତେ ନଷ୍ଟ କଷ୍ଟ କରି ବସିବେ । ଚାଲ ଅନ୍ୟ ଗାଁକୁ ।” ସେମାନେ ସମ୍ବଲପୁର ଗଡ଼ଜାତ ଦେବାହାଲକୁ ଯାଇ ବଡ଼ ଠାଟ ବାଟରେ ଘର ତିଆରି କରି ବହୁତ ଧାନ୍ଦ ଚେଲ ଲେଣ୍ଡି କରି ରହିଲେ । ଏମାନ କେତେ ଭିତରେ ମହାଜନ ବୋଲି ସମସ୍ତେ କହିଲେ । ବୁଢ଼ା ବୁଢ଼ୀ ସୁଷମାକୁ ବହୁତ ଯତନ କରି ବଢ଼ାଇଲେ । ଦେଖୁ ଦେଖୁ ଷୋହଳ ବର୍ଷ ବିତିଗଲା । ସୁଷମା ଦେହରେ ଯଉବନ ମାଡ଼ି ବସିଲା । ତାର ହେସରସ୍ତାଣୀ, ଉନ୍ନତ ବକ୍ଷ, ମଧୁର ସ୍ୱର, ଲହରୀ କଥା ଆଖପାଖର ସବୁଲୋକଙ୍କ ମନକୁ କିଣିନେଲା । ତାଙ୍କର ଘର ତ ସଡ଼କ କରରେ ଥାଏ । ବାହାର ଘର ଭିତରେ ଓ ବାରଣ୍ଡାରେ କେତେ ଖଣ୍ଡ ଖଟ ଓ ମସିଣା ପଡ଼ିଥାଏ । ଗାଆଁର ଅନେକ ଲୋକ ଓ ଅନେକ ବାଟଚଲା ଲୋକ ଥକାମାରିବାକୁ ସେଠାରେ ସମୟ ସମୟରେ ଆସି ବସନ୍ତି ।

ଦେବାହାଲ ଜନାପଡ଼ା ଜମିଦାରଙ୍କ ଶାସନ ତଳେ ଥାଏ । ଜନାପଡ଼ା ଜମିଦାରଙ୍କ ପୁଅ କନ୍ଦର୍ପ ବୟସ ଦେଢ଼ ଲକ୍ଷଣି ମଦନ ମୋହନ ଜମିଦାର ତାକୁ ସମୟେ ସମୟେ ଦେବାହାଲର ହାଲଚାଲ ବୁଝିବାକୁ ପଠାଇ ବସିଲେ । ଜମିଦାରଙ୍କ ଇଚ୍ଛା, ପୁଅ ଆଜଠାରୁ ଜମିଦାରି ଚଳାଇବାର ସ୍ୱତନ୍ତ୍ର ପନ୍ଥ ଶିଖି ନ ଥିଲେ ତେବେ ପଛକୁ ହରବର ହେବ । କନ୍ଦର୍ପ ବଳବାନ୍, ରୂପବାନ୍, ମେଳାପି ଓ ମିଷ୍ଟଭାଷୀ । ଦେବାହାଲର ସମସ୍ତେ ତାକୁ ବଡ଼ ଭଲ ପାଆନ୍ତି । ସେ ଘୋଡ଼ା ଚଢ଼ାରେ ବଡ଼ ପାରଙ୍ଗମ ଥାଏ । ଗୋଟିଏ

GPNanda Colln., Digitized by srujanika@gmail.com

ବୁଲ୍ଥି ଘୋଡ଼ାରେ ଚଢ଼ିଯାଏ । ଗାଁର ହାଲଚାଲ ବୁଝିଆସି ଘର ବାହାର ଘରେ ଟିକଏ ବିଶ୍ରାମ ନେଇ ସଞ୍ଜ ଆଡ଼କୁ ଜନାପଡ଼ା ଫେରି ଆସେ । ଦିନେ ଯଶ୍ଚଂଦ୍ରଙ୍କୁ ତାଙ୍କର ଦେବାହାଲ ଗାଁ ଦେଖାଇବାକୁ କନ୍ଦର୍ପ ନେଲା, ସେମାନେ ଯେତେବେଳେ ସୁଷମାର ଘର ବାହାର ପିଣ୍ଡାରେ ବସି ସଞ୍ଜ ପବନ ଖାଉଥାନ୍ତି, ସୁଷମା ବନ୍ଧ ଆଡ଼କୁ ଯିବାକୁ ବାହାରିଲା । ତାଙ୍କ ଘର ପାଖରେ ଯୋଡ଼ାଟିଏ ଠିଆ ହେବାର ଦେଖି ସେ ଆଡ଼କୁ ଯେପରି ନଜର ପକାଇଲା ତାର ଆଖି ଓ କନ୍ଦର୍ପର ଆଖି ଏକତ୍ର ହୋଇଗଲା । ଦୁହିଙ୍କଠାରେ ରୂପ ଯୌବନ ଭରିଛି, ଦୁହେଁ ଦୁହିଙ୍କୁ ବିବାହ କରିବାର ଇଚ୍ଛା କଲେ । ମାତ୍ର କହିବ କିଏ ? ବିଚକ୍ଷଣ ଯଶ୍ଚଂଦ୍ର ଦୁହିଙ୍କ ମନର ଭାବ ବୁଝିନେଲେ । ତାପରେ କନ୍ଦର୍ପ ଓ ଯଶ୍ଚଂଦ୍ର ଜନାପଡ଼ାକୁ ଫେରିଗଲେ ।

କନ୍ଦର୍ପର ଶରୀର ଯିନା ଜନାପଡ଼ା ଫେରିଲା ମନଟା ଦେବାହାଲରେ ରହିଗଲା । ସତସାଗ ତାର ଆଖିଆଗରେ ସୁଷମାର ମୂର୍ତ୍ତି ଝଟକୁଥାଏ । ସେ ଦିନ ଗୋଟିଏ ରାତି ତାକୁ ସାତରାତି ପରି ଲାଗିଲା । ଆରଦିନରୁ କନ୍ଦର୍ପ ତରତର ହୋଇ ବେଳାକୁ ମୁଠେ ଖାଇଦେଲା ଷଣି ଦେବାହାଲରେ ହାଜର ଓ ସୁଷମା ଘର ବାହାର ଘରେ ବିଶ୍ରାମନେଲା । ଜମିଦାର ବାବୁ ଆସିଛନ୍ତି ବୋଲି ଡୁମାଳ ବୁଢ଼ାର ଆନନ୍ଦ କହିଲେ'ନସରେ । ସେ କନ୍ଦର୍ପ ସଙ୍ଗେ ଗପ ସପ କରିବାକୁ ବସିପଡ଼େ ଓ ମଝିରେ ମଝିରେ ପାନ ଆଣିବାକୁ ସୁଷମାକୁ ଡାକେ । ସୁଷମା ସୁନ୍ଦରରୂପେ ପାନଭଙ୍ଗି ଖଣ୍ଡେ କମକଂଟା ଥାଳିଆରେ ରଖି ଯେତେବେଳେ ଦେଇ ଆସେ ସେତେବେଳେ କନ୍ଦର୍ପ ଓ ସୁଷମା ଦୁହେଁ

GPNanda Colln., Digitized by srujanika@gmail.com

ଦୁହିଁଙ୍କୁ ଦେଖି ବହୁତ ଖୁସୀ । କେଉଁଦିନ ସ୍ୱ ଜଳଖିଆ, କେଉଁଦିନ ଜଳଖିଆ ସରବତ୍ ତିଆରିକରି ବୁଢ଼ା କନ୍ଦର୍ପଙ୍କୁ ଦିଏ । କନ୍ଦର୍ପ ନାହିଁ କଲେ ବୁଢ଼ା ସୁଷମାକୁ ଡାକ ପକାଇ କହେ "ଆରେ କୁନ, ଆମ୍ଭର ଜମିଦାରବାବୁ ନାହିଁ କରୁଛନ୍ତି, ନେଇଯା ।" ସୁଷମା ଘରଭିତରୁ ମଧୁର ଗଳାରେ ଗେଲେଇ ଗେଲେଇ କହେ "ହଁ, ହଁ, ସେ ଖାଇବେ । ବୁଢ଼ା କହିଲା "ଶୁଣୁନ୍ତୁ ଜମିଦାର ଆମ୍ଭର କୁନ କ'ଣ କହୁଛି ?" କନ୍ଦର୍ପ କହିଲା, "ମତେ ଶ୍ରେଖ କରୁନାହିଁ ବୋଲି ସିନା କହୁଛି ।" ବୁଢ଼ା କହିଲା "ଗଉଁତିଆ ବାବୁ, ଶୁଣୁନ୍ତୁ—ଆମ୍ଭର ସୁଷମାର ମନ ଫାଟିଯିବ ।" କନ୍ଦର୍ପ କହିଲା,"ହଉ ତେବେ ଖାଇବା" ତହିଁରୁ ସୁଷମା ଜାଗା କରେ । ବୁଢ଼ା ଆଉ କନ୍ଦର୍ପ ଦୁହେଁ ଖାଇ ବସନ୍ତି, ସୁଷମା ସବୁରକମ ଦେଇଯାଏ । ଫେର୍ ପରଶି ଆସେ । କନ୍ଦର୍ପ କହେ,"ଅଛି ତ ଆଉ ଦିଅନାହିଁ ।" ସୁଷମା କହେ,"ଫିରେଇ ନେଲେ କିଏ ଖାଇବ ?" ଏପରି କହି ହସି ହସି କଛି ଦେଇ ଚାଲିଯାଏ ।

କନ୍ଦର୍ପ ଓ ସୁଷମା ଭିତରେ ପ୍ରେମର ସଂଞ୍ଚାର ଦେଖି ବୁଢ଼ା ବଡ଼ ଖୁସୀ ହେଲା, ଅନାଥା ସୁଷମାର ସମ୍ପତ୍ତିରେ ସେ ଏତେ ଧନୀ ହୋଇଛି । ତାକୁ ଗୋଟିଏ ଭଲ ପାତ୍ରରେ ଦେଲେ ସେ ବହୁତ ଖୁସି ହୁଅନ୍ତା ବୋଲି ଭାବୁଥାଏ । ସେ ସୁଯୋଗ ଘଟି ଆସୁଥିବାର ଦେଖି ତାର ହୃଦୟରେ ଆନନ୍ଦ ଧରେ ନାହିଁ । ଏପରି କେତେଦିନ ଗଲା । ଦିନେ ଦିନେ କନ୍ଦର୍ପ ରାତିରେ ମଧ ରହି ବସିଲା—ମଦନମୋହନ ରାତ ହେଲେ ମାଳଣୀ କହନ୍ତି,"ଦେବାହାଲ କ'ଣ ଆମ୍ଭର ଗାଁ ନୁହେ ? ନିଜର ଗାଁରେ ରହିଲା ଯେ କଣ ହେଲା ?" ଠିକ୍ ଆରଦିନ ସୁଷମାର ଜନମ ଦିନ, ସେଦିନ ବନ୍ଧୁବାନ୍ଧବ ଗାଁର ସବୁ ଲୋକଙ୍କୁ

GPNanda Colln., Digitized by srujanika@gmail.com

ନିମନ୍ତ୍ରଣ କରି ବୁଢ଼ା ଗୋଟିଏ ବଡ଼ ଉତ୍ସବ କରେ । ସବାଙ୍କୁ
କନ୍ଦର୍ପଙ୍କୁ ଜମିଦାର ହିସାବରେ ନିମନ୍ତ୍ରଣ କରି ବୁଢ଼ା କହିଲା,
"ବାବୁ ଆଜ ଜନାଦେଢ଼ା କାହିଁକି ଯିବ ? ଆମ୍ଭର ଉତ୍ସବରେ
ଯୋଗଦେବ ।" ରୋଗୀ ଲୋଡ଼ୁଥିଲା ଯାହା, ବୈଦ୍ୟ ବତାଇଲା ତାହା ।

ସେପାଖେ ମଦନମୋହନ ଜମିଦାର ବଡ଼ ରାଗ । କନ୍ଦର୍ପ
ଦେବାଳୟରେ ରାତିଟା ରହିଲା ତ ରହିଲା । ପୁଣି ସବାଙ୍କୁ ଓ ତାର
ଦେଖାନାହିଁ । ଦେବାଳୟ ଛାଡ଼ିବାକୁ ତାର ମନ ହେଉନାହିଁ କାହିଁକି
ବୋଲି ତାଙ୍କର ବନ୍ଧୁ ଯଶଚନ୍ଦ୍ରଙ୍କୁ ପଚାରିଲେ । ସୁଷମାର କଥା
କହିଲା । ରାତିରେ ମଦନମୋହନ ଓ ଯଶଚନ୍ଦ୍ର ଗୁପ୍ତବେଶଧରି
ଦେବାଳୟ ଗଲେ ଓ ଅତିଥିରୁପେ ବୁଢ଼ାଙ୍କର ଉତ୍ସବରେ ଯୋଗ
ଦେଲେ । ଦେଖିଲେ ଯେ ଘରଆଡ଼େ ଆନନ୍ଦରବଜାର ବସିଛି ।
କନ୍ଦର୍ପ ଆଉ ସୁଷମା ସବୁ ବନ୍ଦୋବସ୍ତ କରୁଛନ୍ତି । ସୁଷମାକୁ ଦେଖି
ମଦନମୋହନ ତଟସ୍ଥ ହୋଇଗଲେ ଓ ବୁଢ଼ାକୁ ପଚାରିଲେ, "ତୁମ୍ଭର
ଝିଅ ପାଇଁ କେଉଁଠାରେ ଠିକ୍ କରିଛ ?" ବୁଢ଼ା କହିଲା, "ସେଇ ଯେ
କନ୍ଦର୍ପ ଆମ୍ଭର ଜମିଦାର ପୁଅ, ସେ ଆମ୍ଭର କୁନକୁ ବଡ଼ ଭଲ
ପାଉଥିବାର ଦେଖୁଛୁଁ । ସେ ଯଦ ବିବାହ କରିବାକୁ ଇଚ୍ଛା କରନ୍ତା
ତେବେ ସେ ବଡ଼ ସୁଖରେ ରହନ୍ତା ।" ଗୁପ୍ତବେଶରେ ଥିବାରୁ
ମଦନମୋହନ ଓ ଯଶଚନ୍ଦ୍ରଙ୍କୁ କେହି ଚିହ୍ନିପାରିଲେ ନାହିଁ ।
ସେମାନେ କନ୍ଦର୍ପଙ୍କୁ ଡାକି କହିଲେ "ବୁଢ଼ାର ଝିଅକୁ ବିବାହ
କରିବ ? କି ତୁମ୍ଭର ବାପାଙ୍କୁ ପଚାରିବ ?" କନ୍ଦର୍ପ କହିଲା "ମୋର
ବିବାହ ହେବାର ଷୋଳଣା ଇଚ୍ଛା ଅଛି । ମୋର ବାପାଙ୍କୁ ପଚାରିବାର
ଆବଶ୍ୟକ କଣ ?" ଏହା ଶୁଣି ମଦନମୋହନ ଏତେ ରାଗହେଲେ
ଯେ ଗୁପ୍ତବେଶ ଖୋଲିଦେଇ କହିଲେ "କନ୍ଦର୍ପ, ତୁ ଏ ଟୋକୀକୁ

GPNanda Colln., Digitized by srujanika@gmail.com

ଆଉ ଯଦି ଦେଖୁ ତେବେ ତୋତେ ଗୁଣ୍ଡ଼ପୂର କରିଦେବି, ତୁ ଆଉ ଗଡ଼ିଁତଆ ହୋଇ ପାରିବୁ ନାହିଁ ।" ତହୁଁ ସେ ସୁଷମାକୁ କହିଲେ, "ତୁ ଯଦି ମୋର ପୁଅକୁ ଆଉ କେବେ ଦେଖାଦେଇ କଥାବାର୍ତ୍ତା ହେଉ ତାହେଲେ ତୋର ବାପକୁ ଓ ତୋତେ ବହୁତ ହଇରାଣକରି ମାରିଦେବି ।" ଏହା କହି ରାଗରେ ସେହିକ୍ଷଣି ଜମାପଡ଼ା ଚାଲିଗଲେ । ସୁଷମା କନ୍ଦର୍ପକୁ କହିଲା "ମୁଁ ବିନତି କରୁଛି ତୁମ୍ଭେ ଏକ୍ଷଣି ଚାଲିଯାଅ, ମୋର ପାଇଁ ତୁମର କାହିଁକି ଅନିଷ୍ଟ ହେବ । ମୁଁ ସପନ ଦେଖୁଥିଲି ସପନ ଭାଙ୍ଗିଛି । ଗାଣ୍ଡ ଟେକ ମେଣ୍ଢୀ ଦୁହାଁ କାମରେ ମୋର ଦିନଟା ମୁଁ କାଟିଦେଇ ପାରିବି ଯେ । ହଁ, ତୁମର ବାପାଙ୍କୁ କହିବ, ଯେଉଁ ସୂର୍ଯ୍ୟ ତାଙ୍କ ପକ୍କା ମହଲରେ କିରଣ ଦିଅନ୍ତି ସେ ଆମ୍ଭ କୁଡ଼ିଆ-ଉପରେ ମଧ୍ୟ କିରଣ ଦିଅନ୍ତି ।" ଏ କଥାଗୁଡ଼ିକ ସୁଷମା ଏପରି ବିନମ୍ର, ଶାନ୍ତ ଓ ମଧୁରତା ସହିତ କହିଲା ଯେ ଯଜ୍ଞନ୍ଦ୍ରର ହୃଦୟ ତରଳିଗଲା ଓ ଦୁହିଙ୍କ ମିଳନପାଇଁ କିଛି ଉପାୟ କରିବାକୁ ଜିଦ୍ ଧରିଲା ।

ଯଜ୍ଞନ୍ଦ୍ର କନ୍ଦର୍ପ, ସୁଷମା ଓ ବୁଢ଼ାକୁ ନେଇ ରେମଣ୍ଡା ଜମିଦାର ପାଖକୁ ଯାଇ ସବୁକଥା କହିଲା । ବାସୁଦେବ ସେମାନଙ୍କୁ ଆଦର ଓ ଯତନରେ ରଖିଲେ । ମଦନମୋହନ ରାଗରେ କନ୍ଦର୍ପକୁ ଖୋଜି ଯାଇକରି ରେମଣ୍ଡାରେ ପହଞ୍ଚିଲେ । ସେଠାରେ ସୁଷମାକୁ ବାସୁ-ଦେବଙ୍କ ଝିଅ ବୋଲି ଜାଣି ବହୁତ ଖୁସୀ ହେଲେ । ବାସୁଦେବ ସୁଷମାକୁ ଦେଖିଲାକ୍ଷଣି ତାଙ୍କର ନିଜସ୍ତ୍ରୀ ବିମଳାର କଥା ମନେ ପଡ଼େ ଓ ସେ ଭେ ଭେ କାନ୍ଦନ୍ତି । ଚଞ୍ଚଳା ନିଜ ପତି ଶୁକଦେବର ମରଣ ସମ୍ବାଦପାଇ ଦୁଃଖିତ ଥିଲେହେଁ ଅନ୍ୟର ଦୁଃଖ ଦୂର କରିବାକୁ

GPNanda Colln., Digitized by srujanika@gmail.com

ମନ କଲେ । ସେ ବାସୁଦେବଙ୍କୁ କହିଲେ, "ଜମିଦାର, ମୋର ସଙ୍ଗିନୀ ବିମଳାର ଗୋଟିଏ ଅବିକଳ ମୂରତି ମୋର ଘରେ ରଖିଛି । ତୁମ୍ଭେ ତାକୁ ଥରେ ଥରେ ଦେଖି ଆସୁଥିବ ସେ ତୁମ୍ଭର ଦୁଃଖ ଉଣାହେବ ।" ଏ କଥା ଶୁଣି ମଦନମୋହନ, କନ୍ଦର୍ପ, ସୁଷମା, ବାସୁଦେବ, ଯଷ୍ଟାନ୍ଦ୍ର, ଉମ୍ବାଳବୁଢ଼ା ଓ ଅନେକ ଲୋକ ଚଞ୍ଚଳା ଘରକୁ ଗଲେ । ଚଞ୍ଚଳା ପରଦାଟା ଉଠାଇ ଦେବାରୁ ସମସ୍ତେ ଦେଖିଲେ ଯେପରି ସାକ୍ଷାତ୍ ବିମଳା ଠିଆ ହୋଇଛି — ସୁଷମା ମୂରତିକୁ ଚୁମା-ଦେବାକୁ ବସିବାରୁ ଚଞ୍ଚଳା ମନାକଲା ଓ କହିଲା, "ଏବ ତକ ରଙ୍ଗ ଶୁଖିନାହିଁ—ଛୁଇଁଲେ ଖରାପ ହୋଇଯିବ । ଆଚ୍ଛା ଏବେ ପରଦା ପକାଇ ଦେଉଛି ।" ମଦନ ମୋହନ କହିଲେ, "ନାହିଁ, ନାହିଁ । ମୁଁ କୋଡ଼ିଏ ବର୍ଷପରେ ଦେଖୁଛି ପରା, ଆହା ସତେ ଯେପରି ମୂରତିଟି ନିଃଶ୍ୱାସ ମାରୁଛି ।" ଚଞ୍ଚଳା କହିଲା, "ମୁଁ ମୂରତିକୁ ଚଳାଇ ଦେଇପାରେଁ । କୁଆଁ ଖ କାଠି ଛୁଇଁଲେ ତୁମ୍ଭେ ସଭେ ଯାଦୁ ବୋଲି କହିବ । ତେଣୁ ମୂରତିକୁ ନ ଛୁଇଁ ଦେଖ ଚଳାଉଛି । ଆଚ୍ଛା ଏବେ ପଥରପର ଠିଆ ନ ହୋଇ ଆଗକୁ ଚାଲିଆ ।" ବିମଳା ଦେହୀ ଉପରୁ ପାଉଚ ମାଡ଼ି ମାଡ଼ି ତଳକୁ ଆସିଲା କ୍ଷଣି ବାସୁଦେବ ଯାଇ ଧରି ପକାଇଲେ ଓ ବିମଳା ଚୁମାଦେଲା ଓ ସବୁକଥା ଠିକେ ଠିକେ କହିଗଲା । ସମସ୍ତେ ଖୁସୀ ହେଲେ । ମଦନମୋହନ ଓ ବାସୁଦେବ ପୂର୍ବପରି ଅଭେଦ ବନ୍ଧୁ ହେଲେ । କନ୍ଦର୍ପ ଓ ସୁଷମାର ବିବାହ ଜାକଜମକରେ କରିଗଲା । ବାସୁଦେବ ଓ ବିମଳା ସୁଖରେ ରହିଲେ । ସେ ପାଖେ ମଦନମୋହନ ଓ କନ୍ଦର୍ପ ମାଳତୀ ଓ ସୁଷମାକୁ ପାଇ ସୁଖରେ ରହିଲେ ।

—*—

GPNanda Colln., Digitized by srujanika@gmail.com

# ୪—ବାଳିକାର ବିଚିତ୍ର ବୁଦ୍ଧି

ଆମ୍ଭେ ଯେଉଁ କାଳର କଥା କହୁଛୁ, ସେତେବେଳେ ସମ୍ବଲପୁର ସହରରେ ଦୁଇଜଣ ମହାଜନ ଥିଲେ । ଘରର ଅଭାବ ଅସୁବିଧା ବେଳେ ସେମାନେ ଟଙ୍କା ଋଣ ଦିଅନ୍ତି । ସଦାନନ୍ଦ ସୁଆର ବଡ଼ ଦୟାଳୁ, କମ୍ ସୁଧ ନିଅନ୍ତି ଓ ହିସାବ କିତାବ ବେଳେ ସୁଧରୁ କେତେ ଛାଡ଼ ମଧ୍ୟ ଦିଅନ୍ତି । କୃପାସିନ୍ଧୁ ପଟ୍ଟନାୟକ ଟାଣ ସୁଧ ନିଅନ୍ତି ଓ ହିସାବ କିତାବରେ ଯେତେ ହୁଏ ସେଥିରୁ ପଇସେ ବି ଛାଡ଼ନ୍ତି ନାହିଁ, ଖାତକର ସର୍ବନାଶ ହୋଇ ଯାଉଥିଲେ ବି ସେ ତାଙ୍କର ପାଉଣାରୁ ପଇସେ ଛାଡ଼ନ୍ତି ନାହିଁ । କୃପାସିନ୍ଧୁର ଏ ଅମନୁଷ୍ୟ କାରବାର ଦେଖି ସଦାନନ୍ଦ ତାଙ୍କୁ ବାଟେ ଘାଟେ ଯେତେବେଳେ ଦେଖନ୍ତି କୁକୁର ବୋଲି ଡାକନ୍ତି । କୃପାସିନ୍ଧୁ କିଛି କହେ ନାହିଁ ମାତ୍ର ପେଟ ଭିତରେ କଷ୍ଟ ରଖିଥାଏ, ଆଉ ଭାବେ "ମଉକା ପଡ଼ିଗଲେ । ଏହାକୁ ଠିକ କରିବି ।"

ନିତ୍ୟାନନ୍ଦ ପାଢ଼ୀ ସମ୍ବଲପୁରର ଆଉ ଜଣେ ଯୁବକ; ଉଚ୍ଚ କୁଳର ହେଲେହେଁ ଦରିଦ୍ର ଓ ଦରିଦ୍ର ହେଲେହେଁ ସୁଶୀଳ ଓ ସାଧୁ । ସଦାନନ୍ଦ ସଙ୍ଗେ ତାଙ୍କର ଖୁବ୍ ପଡ଼େ । ଦୁହେଁ ଏକ ଆତ୍ମା ପରି ଚଳୁଥାନ୍ତି । ଦିନେ ନିତ୍ୟାନନ୍ଦ ସଦାନନ୍ଦ ପାଖକୁ ଯାଇ କହିଲେ, "ବନ୍ଧୁ, ବେହେରା ଘରେ ଗୋଟିଏ ବିବାହେବାର ଝିଅଟିଏ ଅଛି ପରା—ଅତି ସୁନ୍ଦରୀ, ନାମ ତିଳୋତ୍ତମା ପୁଣି ତାର ବାପ ମାର୍କଣ୍ଡ ବେହେରା କିଛିଦିନ ହେଲା ମରିଯାଇଥିବାରୁ ତିଳୋତ୍ତମା ଅଚଳାଚଳ ସମ୍ପତ୍ତିର ମାଲିକ । ତାର ବାପା ବର ବାଛୁବାର

GPNanda Colln., Digitized by srujanika@gmail.com

କୋଟିଏ ପରୀକ୍ଷା କରି ଯାଇଛନ୍ତି । ସେ ପରୀକ୍ଷାରେ ଯେ ପାସ୍ ନ କରିବ ସେ ତାଙ୍କୁ ବିବାହ କରି ପାରିବ ନାହିଁ । ଅନେକ ରୂପବାନ୍, ଧନବାନ୍, କୁଳବାନ୍ ଯୁବକ ହତାଶ ହୋଇ ଫେରି ଯାଉଥିବା ଶୁଣିଲି, ମୁଁ ଥରେ ଚେଷ୍ଟା କରନ୍ତି ଭାବୁଛି । ମାତ୍ର ହାତରେ ଟଙ୍କା ନାହିଁ । ତେଣୁ ତୁମର ମତ ନେବାକୁ ଆସିଛି । ସଦାନନ୍ଦ କହିଲେ "ଭଲ ବିଚାର କରିଛ । ତେବେ ମୋର ହାତରେ ତ ଟଙ୍କା ନାହିଁ । ସୁନ୍ଦଳ କଣିକର ବୃପରେ କଟକ ପଠାଯାଇଛି । ପ୍ରାୟ ମାସକ ଭିତରେ ବୃପ ଫେରି ଆସିବାର କଥା । ତେତେବେଳ ତକ ଟାକଲେ ଚଳିବ ନାହିଁ । ଅନ୍ୟ କେହି ମାଡ଼ିବସି ପାରନ୍ତି । ହଁ, ତୁମର କେତେ ଦରକାର କ ?" ନିତ୍ୟାନନ୍ଦ କହିଲେ, "ପ୍ରାୟ ୫୦୦ ।" ସଦାନନ୍ଦ କହିଲେ, "ଆଚ୍ଛା, ମୁଁ ଯାଉଛି । କୃପାସିନ୍ଧୁଠାରୁ ନେଇ ଆସିବି । ଏଇ ମାସେ ଖଣ୍ଡେ ପାଇଁ ଯେତେ ସୁଧ ନେବେ ନେଉ ।"

ସଦାନନ୍ଦ ଓ ନିତ୍ୟାନନ୍ଦ କୃପାସିନ୍ଧୁ ଘରକୁ ଗଲେ । କୃପାସିନ୍ଧୁ ଘରେ ବସି ତାର ହିସାବ କିତାବରେ ଲାଗିଥାଏ । ସଦାନନ୍ଦଙ୍କୁ ଦେଖିଲା କି କହିଲା, "ଆଜ ଏ କୁକୁର ଘରେ ହାଜ କରିବାର ଅଭିପ୍ରାୟ ?" ସଦାନନ୍ଦ କହିଲେ, "ଟଙ୍କା କିଛି ଦେଇଥା । ଯାହା ସୁଧ ନେବାର ନିଅ—ପ୍ରାୟ ମାସକପରେ ଦେଇଦେବି ।" କୃପାସିନ୍ଧୁ ମନେ ମନେ ଭାରି ଖୁସୀ ହୋଇ କପଟ ହସଟିଏ ହସି କହିଲା, "ତୁମ୍ଭେ ଟଙ୍କା ନେବ ଯେ ମୁଁ ସୁଧ ନେବି ? ରାମ, ରାମ, ହଁ କେତେ ନେବ ?" ସଦାନନ୍ଦ କହିଲେ, "କେବଳ ୫୦୦ ।" କୃପାସିନ୍ଧୁ କହିଲେ "ଏଇଥିପାଇଁ ; ଦେଉ ନେବ ।" ସଦାନନ୍ଦ ପଚାରିଲେ, "ସୁଧର ଦର ।" କୃପାସିନ୍ଧୁ ମୁରୁକ ମୁରୁକ ହସି କହିଲା, "୫୦୦

GPNanda Colln., Digitized by srujanika@gmail.com

ଟଙ୍କାର ଫେର୍ ସୁଧ କ'ଣ ନେବ—ତେବେ ନାଗ ନେବାର ସ୍ଥିତ ତ କରାଯିବ । ଇଷ୍ଟାମ ଲେଖାଯିବ, ସାକ୍ଷୀ ବସିବେ—ମୂଳ କେତେ, ସୁଧର ଦର,ସମସ୍ତ ସବୁ ତ ଲେଖିବାକୁ ପଡ଼ିବ ।"ସଦାନନ୍ଦ କହିଲେ, ୫୦୦ ଟଙ୍କା ନେବ ଏକମାସ ପାଇଁ । ସୁଧର ଦର ଏବେ କହ ।" କୃପାସିନ୍ଧୁ ପୁଣି କପଟ ହସ ହସି କହିଲ, "ଛି ଛି ତୁମଠାରୁ ପୁଣି ସୁଧ । ତେବେ ଇଷ୍ଟାମରେ ତ କିଛି ଲେଖିବାକୁ ହେବ । ଲେଖିଦେବ କଣ୍ଟ ମୁତାବକ ଟଙ୍କା ଦେଇ ନ ପାରିଲେ ମୋର ଶରୀରର ଯେ କୌଣସି ଥାନରୁ ଅଧସେର ମାଂସ ମହାଜନ କୃପା-ସିନ୍ଧୁ ପଟନାଏକ କାଟି ନେଇ ପାରିବେ । ମୁଁ କଣ ମାଂସ ଖାଇବ, ସୁଧ ନ ନେବାର ଇଏ କାଏଦା । ଅଥଚ ଇଷ୍ଟାମ ଲେଖାର ନିୟମ-ଗୁଡ଼ିକ ବି ରହିଲା ।" ନିତ୍ୟାନନ୍ଦ ପ୍ରସ୍ତାବରେ ଅମଙ୍ଗ ହୋଇ ସଦାନନ୍ଦଙ୍କୁ ନାଗ ନେବାକୁ ମନା କଲା । ମାତ୍ର ସଦାନନ୍ଦ ନ ମାନି ସେହି ସର୍ତ୍ତରେ ଇଷ୍ଟାମ ଲେଖି ୫୦୦ ଟଙ୍କା କୃପାସିନ୍ଧୁ ଠାରୁ ଆଣିଲେ ଓ ନିତ୍ୟାନନ୍ଦଙ୍କ ହାତରେ ଦେଲେ ।

ନିତ୍ୟାନନ୍ଦ ଟଙ୍କା ନେଇ ଭଦ୍ରଲୋକ ପରି ଲୁଗା ଅଳଙ୍କାର କିଣାକିଣି କରି ପିନ୍ଧିଲେ ଓ ବେଦେହୀ ଘରକୁ ଗଲେ । ମାରକଣ୍ଡ ବେଦେହୀ ନିଜର ଏକମାତ୍ର ଝିଅ ତିଲୋତ୍ତମାକୁ ଭଲ ପାତ୍ରରେ ଦେଲେ ଖୁସୀ ହୋଇ ପାରିବେ ବୋଲି ଗୋଟିଏ ଭାଗ୍ୟ ପରୀକ୍ଷା ଉପାୟ ବାହାର କରିଥିଲେ, ସୁନା, ରୁପା ଓ ଶିଶାର ତିନୋଟି ସିନ୍ଦୁକ ତିଆରି କରାଇଥିଲେ । ସୁନାସିନ୍ଦୁକ ଉପରେ ଲେଖାଥିଲା :—

"ମତେ ଯେ ଧରିବ ଶରଧା କରି
ପାଇବ ଲୋକେ ଯା କାମନା କରି ।।"

GPNanda Colln., Digitized by srujanika@gmail.com

ରୁପାସିନ୍ଦୁକ ଉପରେ ଲେଖାଥିଲା :—

"ଶରଧାରେ ଯେବେ ଧରିବୁ ମତେ
ସେତେ ପାଇଁ ଯୋଗ୍ୟ ଦେବ ମୁଁ ତତେ ॥"

ଶିଶା ସିନ୍ଦୁକ ଉପରେ ଲେଖାଥିଲା :—

"ମତେ ଯେ ବାଛୁବ ଦେବ ମୁକର
ଯାହା କଛୁ ରଖିଥିବ ପାଖର ॥"

ପୁଣି ତିନ ସିନ୍ଦୁକ ଭିତରେ ଭିତରେ ତିନୋଟି ଗୀତ ଓ ତିନୋଟି ପଦାର୍ଥ ରଖାହୋଇଥିଲା । ସେ ତିନ ପଦାର୍ଥ ଭିତରୁ ଗୋଟିଏ ତିଲୋତ୍ତମାର ମଧୁର ମୂରତି । ମାରକଣ୍ଡ ଦେବ ପଣ କରିଥିଲେ ଯେ, ଯେ ତିଲୋତ୍ତମାର ମୂରତିଥିବା ସିନ୍ଦୁକକୁ ବାଛି-ପାରିବ ସେ ତାର କର ପଦମ ଧରି ପାରିବ । ମାରକଣ୍ଡ ଦେବ ତ ମରିଗଲେ । ତାଙ୍କ ଝିଅ ତିଲୋତ୍ତମା ବାପାଙ୍କର ପଣ ଅନୁସାରେ ବିବାହ କରିବାର ସ୍ଥିର କଲେ ।

ନିତ୍ୟାନନ୍ଦ ଦେବ ଘରେ ପହଞ୍ଚି ଦେଖିଲେ ଯେ ପରୀକ୍ଷାରେ ଫେଲ୍ ହୋଇ ଅନେକ ଭଦ୍ର ଯୁବକ ହତାଶ ହୋଇ ବସିଛନ୍ତି । ଦୁଇ ଜଣଙ୍କ ପରୀକ୍ଷା ବାକି ଅଛି । ସେ ମିଶି ତିନିଜଣ ହେଲେ । ପ୍ରଥମ ଜଣ ସିନ୍ଦୁକ ଥିବା ଘରକୁ ଗଲା ଓ ସୁନାସିନ୍ଦୁକରେ ହାତ ମାଇଲା । ଫିଟାଇ ଦେଖିଲା ଭିତରେ ଗୋଟିଏ ଅସଜଡ଼ ମନୁଷ୍ୟମୁଣ୍ଡ ଓ ଗୋଟିଏ ଗୀତ

"ଯେତେ ହଳଦିଆ ନୁହଇ ସୁନା
ଯାଆ ଯା ତୋ ଆଶା ହୋଇଲା ଚୂନା ।"

GPNanda Colln., Digitized by srujanika@gmail.com

ବିଶ୍ୱସ୍ତ ଜଣକ ରୂପାସନ୍ଦୁକ ଫିଟାଇ ଦେଖିଲା ଭିତରେ ଗୋଟିଏ ମୂରୁଖର ମୁଣ୍ଡ ଓ ଗୋଟିଏ ଗୀତ ।

"ଲମ୍ବ କୁଞ୍ଚ ପିନ୍ଧା ମାତ୍ର ମୂରୁଖ;
ଯଥା ରୂପାରଙ୍ଗା ଏହି ସିନ୍ଦୁକ ॥"

ତାପରେ ନିତ୍ୟାନନ୍ଦ ଭଗବାନ୍ ଓ ଭଗବତୀଙ୍କୁ ସ୍ମରଣ କରି କୋଠରୀ ଭିତରକୁ ଗଲେ ଓ "ବାହାର ସୁନ୍ଦର ଭିତର ପୂର୍ଣ୍ଣ" ହୋଇପାରେ ଭାବି ସୁନା, ରୂପା ସିନ୍ଦୁକକୁ ଛାଡ଼ି ଶିଶାର ସିନ୍ଦୁକରେ ହାତ ମାଇଲେ ଓ ଖୋଲି ଦେଖିଲେ ତିଲୋତ୍ତମାର ମଧୁର ମୂରତି ଓ ଗୋଟିଏ ଗୀତ ।

"ଭାଗ୍ୟେ ଯା ମିଳିଲା ନିଅ ସନ୍ତୋଷେ
ନ ଖୋଜିବ ନୂଆ ଲୋଭେ କି ରୋଷେ
ବଦନ ଫେରାଇ ପ୍ରିୟାକୁ ଦେଖ
ଚୁମାହାନେ ଦିଅ ସମ୍ମତି ଲେଖ ।"

ତିଲୋତ୍ତମା ଓ ନିତ୍ୟାନନ୍ଦ ପରସ୍ପରକୁ ଅଭିବାଦନ କରି ଆନନ୍ଦିତ ହେଲେ । ଅନ୍ୟମାନେ ନିରାଶ ହୋଇ ଫେରିଗଲେ ।

ବିଳମ୍ବ ନ କରି ନିତ୍ୟାନନ୍ଦଙ୍କ ସଙ୍ଗେ ତାଙ୍କର ବିବାହ କାର୍ଯ୍ୟ କରି ନେବାକୁ ତିଲୋତ୍ତମା ବିବିଧ ସାଜସଜ୍ଜା କରାଇ ବସିଲେ । ଏ ସମୟରେ ନିତ୍ୟାନନ୍ଦର ଜଣେ ବନ୍ଧୁ ଗୋପାଳ ସଦାନନ୍ଦ ଲେଖିଥିବା ଖଣ୍ଡେ ପତ୍ର ନିତ୍ୟାନନ୍ଦଙ୍କୁ ଦେଲା । ସେ ପତ୍ର ପଢ଼ି ତାର ମୁହଁ କଳା ପଡ଼ିଗଲା । ପତ୍ରରେ ଲେଖାଥିଲା, "ପ୍ରିୟବନ୍ଧୁ, ଟଙ୍କା ଧରି ଫେରୁଥିବା ବେଳେ ମୋର ଜାହାଜ ମହାନଦୀରେ ବୁଡ଼ିଗଲା । ଏହା ଶୁଣି କୃପାସିନ୍ଧୁ କଚେରୀରେ ନାଲିସ କରିଛି

ଟଙ୍କା ବଦଳରେ ମୋର ଦେହରୁ ଅଧସେର ମାଂସ କାଟି ନେବାକୁ । ସେ ଦେଣା ତ ମତେ ଦେବାକୁ ପଡ଼ିବ, ତେବେ ସେ ଦେଣା ଦେଲେ ମୋ ପ୍ରାଣ ଆଉ ରହିପାରେ କି ? ଅତଏବ ମରିବା ଆଗରୁ ଥରେ ତୁମକୁ ଦେଖିବାର ଇଚ୍ଛା ଅଛି । ମୋର ପ୍ରତି ସ୍ନେହ ଥିଲେ ଆସିବ । ଲେଖିଛି ବୋଲି ଆସିବ ନାହିଁ ।" ତିଲୋତ୍ତମା କହିଲା, "ଏପରି ବନ୍ଧୁର ପ୍ରାଣରକ୍ଷା ଆମର କର୍ତ୍ତବ୍ୟ । ଆସ ଶୀଘ୍ର ବିବାହ କାର୍ଯ୍ୟ ଶେଷକରିବା—ତା ହେଲେ ଆଇନ ଅନୁସାରେ ଏ ମୋର ଅଚଳାଚଳ ସମ୍ପତ୍ତି ତୁମର ହେବ । ତୁମେ ଯେତେ ଗୁଣ ଟଙ୍କା ଦେଲେ ନେଇ ରାକ୍ଷସକୁ ଶୁଝି ଦେଇ ବନ୍ଧୁକୁ ମୁକୁଳେଇ ଆମ୍ଭ ଘରକୁ ନେଇ ଆସିବ ।"

ବିବାହ କାର୍ଯ୍ୟ ଶେଷ ହେଲା କି ନିତ୍ୟାନନ୍ଦ ଟଙ୍କା ଥଳିଟିଏ ଧରି ସିଧା କଟେଗିକୁ ଗଲେ । ସେତେବେଳେ ଜଣେ ଯୁବକ ଓକିଲ ମାଜିଷ୍ଟର ସାହେବଙ୍କୁ ସଲାମ କରି ଖଣ୍ଡେ ପତ୍ର ଦେଲେ । ସେଥିରେ ଲେଖାଥିଲା, "ମାଜିଷ୍ଟର ସାହେବ ମହୋଦୟ, ସଦାନନ୍ଦଙ୍କର ମକଦମା ଲଢ଼ିବାକୁ ମୋର ଜିମାରେ ଥିଲା, ମାତ୍ର ଦେହ ଖରାପ ଥିବାରୁ ଏଇ ବିଚକ୍ଷଣ ଯୁବକ ଓକିଲଙ୍କୁ ପଠାଇଲି, ତାଙ୍କୁ ମୁଁ ମକଦ୍ଦମାର ଆମୂଳଚୂଳ ସବୁ ବିଷୟ ବୁଝାଇ ଦେଇଛି, ମୋର ବଦଳରେ ତାଙ୍କୁ ମକଦମା ଲଢ଼ିବାକୁ ଆଦେଶ ଦେବାକୁ ପ୍ରାର୍ଥନା ।" ମାଜିଷ୍ଟର ସାହେବ ଯୁବକ ଓକିଲଙ୍କୁ ଦେଖି ଆନନ୍ଦରେ ଆଦେଶ ଦେଲେ । ଯୁବକ ଓକିଲଙ୍କ ସୁନ୍ଦର ଶାରୀରିକ ଗଠନ ଓ ସଙ୍ଗ ଆଖି ଦୁଇଟିର ସରଳତା ଦେଖି ଅଦାଲତର ସମସ୍ତଙ୍କ ଆଖି ତାଙ୍କ ଉପରେ ରହିଲା । ଓକିଲ ତରତର ଇସ୍ତାମକୁ ପଢ଼ିଦେଇ ପଷ୍ଟର-ବାର ଆରମ୍ଭ କଲେ ।

GPNanda Colln., Digitized by srujanika@gmail.com

ଓକୀଲ—(ସଦାନନ୍ଦଙ୍କୁ) ଏ ଇଷ୍ଟାମ ତୁମେ ଲେଖିଦେଇଛ ?

ସ—ଆଜ୍ଞା, ହଁ ।

ଓ—୫୦୦ଟଙ୍କା ନେଇଥିଲ ?

ସ—ଆଜ୍ଞା, ହଁ ।

ଓ—କଣ୍ଟରେ ଦେଇ ନ ପାରିଲେ ଶରୀରର ଯେ କୌଣସି ଥାନରୁ ଅଧସେର ମାଂସ କୃପାସିନ୍ଧୁ କାଟିନେଇ ପାରେ ବୋଲି ଲେଖି ଦେଇଛ ?

ସ—ଆଜ୍ଞା, ହଁ ।

ଓ—ଆଚ୍ଛା, ଟଙ୍କା ଦେବାକୁ ଏବେ ତିଆର ଅଛ ?

ନ—ଆଜ୍ଞା, ଇଆଦେ ଟଙ୍କା ଆଣିଛି । ମୋର ବନ୍ଧୁ ପାଇଁ ମୁଁ ଟଙ୍କା ଦେଇ ଦେବି ।

ଓ—ସାବାସ୍, ( କୃପାସିନ୍ଧୁଙ୍କୁ ) ତୁମେ ଟଙ୍କା ନେଇ ଯାଅନା ?

କୃ—ନାଇଁ ଆଜ୍ଞା, ଇଷ୍ଟାମରେ ଯାହା ଅଛି ମୁଁ ତାହା ନେବି ।

ଓ—ଟିକଏ ଦୟାକର, ତୁମର ଦେଇଥିବା ଟଙ୍କା ଆଉ ସୁଧ ବାବଦକୁ କିଛି ନେଇ ଯା ।

ନ—ଆଜ୍ଞା, ମୋର ବନ୍ଧୁର ପ୍ରାଣରକ୍ଷାପାଇଁ ମୁଁ ଦୁଇଗୁଣ, ତିନଗୁଣ ଟଙ୍କା ଦେବାକୁ ତିଆର ଅଛି ।

ଓ—କୃପସିନ୍ଧୁ, ତୁମର ନାମର ଅର୍ଥ ହେଉଛି ଦୟାର ସମୁଦ୍ର । ଯେତିକି ଦେଇଥିଲ ତାର ୨।୩ ଗୁଣ ଟଙ୍କା ନେଇ ଯ । ତୁମର କ୍ଷତି କଣ ? ଆଉ ଅଧସେର ମାଂସ ନେବାକୁ ଜିଦ୍ ଧରି ସଦାନନ୍ଦର ପ୍ରାଣ ନେଇଗଲେ ତୁମର ଲାଭ କଣ ?

କୃ—ନାଇଁ ଆଜ୍ଞା—ଏ ଅଦାଲତରେ ମୁଁ ଦୟା ଲୋଡ଼େ ନା ; ଲୋଡ଼େ ନ୍ୟାୟ, ଇଷ୍ଟାମରେ ଯାହା ଲେଖା ଅଛି ସେଇଟା ମୁଁ ନେବି ।

GPNanda Colln., Digitized by srujanika@gmail.com

ଓ—ଆଚ୍ଛା, ସଦାନନ୍ଦ, ତିଆର ରହ । ( କୃପାସିନ୍ଧୁଙ୍କୁ ) ତୁମେ ନେବାକୁ ତିଆର ଅଛ ?

କୃ—( ଷ୍ଟେକ୍ କଟୁରୀ ଗୋଟାଏ ଦେଖାଇ ) ଆଜ୍ଞା ହଁ ।

ଓ—ନିକିତି ଆଣିଛ ?

କୃ—ଆଜ୍ଞା, ହଁ ।

ଓ—ଡାକ୍ତର ଜଣେ ଡାକି ଆଣିଛ ? ନ ହେଲେ ରକ୍ତସ୍ରାବରେ ସଦାନନ୍ଦ ମରିଯାଇପାରେ ?

କୃ—ଆଜ୍ଞା, ତା ତ ଇଷ୍ଟାମରେ ଲେଖାନାହିଁ ।

ଓ—ଇଷ୍ଟାମରେ ନ ଥିଲେ କଣ ହେଲା, ମନୁଷ୍ୟର ଗୋଟିଏ ସାଧାରଣ ଜ୍ଞାନ ତ ଅଛି ।

କୃ—ଆଜ୍ଞା, ସେ ସବୁ କରିବାକୁ ମୁଁ ତିଆର ନୁହେଁ । ଇଷ୍ଟାମରେ ଯାହା ଲେଖା ଅଛି ସେଥିରୁ ମୁଁ ଗାରେ ଇଆଡ଼ ସେଆଡ଼ ଯିବାକୁ ରାଜି ନୁହେଁ ନାହିଁ । ମୁଁ ଖାଣ୍ଟି ନ୍ୟାୟ ଚାହେଁ ।

ଓ—ବେଶ୍, ତୁମେ କେବଳ ଅଧସେରେ ମାଂସ ନେବ ?

କୃ—ଆଜ୍ଞା, ହଁ । ସଦାନନ୍ଦ ଶରୀରର ଯେ କୌଣସି ଜାଗାରୁ ।

ଓ—ଠିକ୍, ତୁମର ହକ୍ ଅଛି, ଅଦାଲତ୍ ମଧ୍ୟ ମଞ୍ଜୁର୍ କରୁଛି ।

କୃ—ଧନ୍ୟବାଦ୍, ମୋର ଭାଗ୍ୟକୁ ଦେବତା କେହି ଓକିଲ ବେଶରେ ଉପସ୍ଥିତ ।

ଓ—କୃପାସିନ୍ଧୁ, ତୁମେ କେବଳ ଅଧସେର ମାଂସର ହକ୍‌ଦାର— ବୁନ୍ଦେ ସୁଦ୍ଧା ରକ୍ତ ନେଇ ପାରିବ ନାହିଁ କି ଅଧସେରରୁ ତିଳେ ସୁଦ୍ଧା ବେଶୀ ମାଂସ କାଟି ପାରିବ ନାହିଁ, ସାବଧାନ, ଇଷ୍ଟାମରେ ଯାହା ଲେଖାଅଛି ତୁମେ ସେତିକି କେବଳ ନେଇ ପାରିବ ।

GPNanda Colln., Digitized by srujanika@gmail.com

କୃ—(ବିକଳ ସ୍ୱରରେ) ମୋର ଟଙ୍କାର ତିନଗୁଣ ମତେ ଦିଆଯାଉ । ମୁଁ ଗ୍ଭଲିଯିବ ।

ଓ—ଇଷ୍ଟାମରେ ତାହା ଲେଖା ନାହିଁ । ତୁମ୍ଭେ ପରା ନ୍ୟାୟ ଗ୍ଭହଁ ? ଇଷ୍ଟାମରେ ଯାହା ଅଛି ତାହା ଗ୍ଭହଁ ? ଅଧସେର ମାଂସ କାଟିନିଅ—ଟିକିଏ ବେଶୀ ଯିବନାହିଁ କି ବୁନ୍ଦେ ରକ୍ତ ଆସିବ ନାହିଁ ।

କୃ—ଆଜ୍ଞା, ଦୟାକରି ମୋର ଦେଇଥିବା ୫୦୦ ଟଙ୍କା ଫେରାଇ ଦେଲେ ମୁଁ ଗ୍ଭଲିଯିବ ।

ଓ—ଏ ଅଦାଲତ୍—ନ୍ୟାୟ ବିଗ୍ଭର ହେବ—ଏଥିରେ ଦୟାମାୟା କିଛି ନାହିଁ । ଗ୍ଭଲିଯିବ ? ତା ହୋଇ ପାରିବ ନାହିଁ । ତୁମ୍ଭ ଉପରେ ଅଦାଲତର ଗୋଟିଏ ଅଭିଯୋଗ, ଗୁରୁତର ଅଭି-ଯୋଗ ଅଛି । ତୁମ୍ଭେ ଜଣେ ପରଦେଶୀକାରୀ, ନିଷ୍କପଟ ଲୋକକୁ ଟଙ୍କା ଧାର ଦେଇ, ଦେଲାବେଳେ ସୁଧ ନ ନେବା ବାହାନାରେ ତା ଦେହରୁ ଅଧାସେର ମାଂସ ନେବାର ସର୍ତ୍ତ କରି ତାକୁ ମାରିବାର ଉପାୟ କରିଥିଲ । ତୁମ୍ଭଙ୍କୁ ସେ ତିନଗୁଣ ଟଙ୍କା ଦେବାକୁ ଗ୍ଭହିଥିଲେ ସୁଦ୍ଧା ତୁମ୍ଭେ ନେବାକୁ ନାହିଁ କଲ । ତୁମ୍ଭେ ଏବେ ହତ୍ୟା-ଅପରାଧରେ ଅପରାଧୀ । ଦେଶର ଆଇନ ଅନୁସାରେ ତୁମ୍ଭର ଅଧେ ସମ୍ପତ୍ତି ସରକାରୀ ଖଜଣାଖାନାକୁ ଦେଲା ଓ ଅନ୍ୟ ଅଧକ ଯାର ହତ୍ୟା କରିବାକୁ ଯାଉଥିଲ ସେ ପାଇଲା । ସରକାର ଦୟାକରି ତୁମ୍ଭକୁ ପ୍ରାଣଦାନ ଦେଲେ । ଯାଅ ( କୃପାସିନ୍ଧୁ କାନ୍ଦ କାନ୍ଦ ଗ୍ଭଲିଗଲା ) ।

ସଦାନନ୍ଦ—ଆଜ୍ଞା, କୃପାସିନ୍ଧୁର ଅଧେ ସମ୍ପତ୍ତି ମତେ ଯାହା ଦିଆ-ଯାଉଛି, ମୁଁ ତାକୁ କୃପାସିନ୍ଧୁର ଝିଅ ନଳିନୀକୁ ଦେଇ ଦେଉଛି । କୃପାସିନ୍ଧୁ ଟଙ୍କା ଲୋଭରେ ଗୋଟିଏ ନିହାତି ଗଧା-

GPNanda Colln., Digitized by srujanika@gmail.com

ସଙ୍ଗେ ଗୁଣବନ୍ତ ନଳିନୀଙ୍କୁ ବିବାହ କରିବା ପ୍ରସ୍ତାବ କରିବାରୁ ନଳିନୀ ନାହିଁ କଲା ଓ ତାର ବାପାର ଅଜାଣତରେ ଦରିଦ୍ର, ଅଥଚ ଗୁଣବାନ୍ ସନ୍ତୋଷକୁମାରକୁ ବିବାହ କଲା । ତେଣୁ ଅପୁତ୍ରକ କୃପାସିନ୍ଧୁ ଏକମାତ୍ର ଝିଅକୁ ନିଜ ସମ୍ପତ୍ତିରୁ ଛଳେ ସୁଦ୍ଧା ଦେବନାହିଁ ବୋଲି ପଣ କରିଥିଲା । ବିଶ୍ୱଭପତି, ଓକିଲ ଓ ଅନ୍ୟାନ୍ୟ ସମସ୍ତେ ସଦାନନ୍ଦକୁ ବହୁତ ବହୁତ ଧନ୍ୟବାଦ ଦେଲେ । ତାଙ୍କୁ ଅଦାଲତର ଆଦେଶରେ ମୁକୁଳେଇ ଦିଆଗଲା । ନିତ୍ୟାନନ୍ଦ ଓକିଲଙ୍କୁ କହିଲେ, "ଆଜ୍ଞା, ଆପଣଙ୍କ ଉପକାର ଆମ୍ଭେ ଏ ଜନମରେ ଶୁଝି ପାରିବୁ ନାହିଁ । କୃପାସିନ୍ଧୁଙ୍କୁ ଯେଉଁ ୫୦୦ ଟଙ୍କା ଦେଇଥାନ୍ତୁ; ତାହା ଆପଣଙ୍କର ପୁରସ୍କାର ରୂପେ ନିଅନ୍ତୁ ।" ଓକିଲ କହିଲେ, "ନା, ନା, ମୁଁ ଟଙ୍କାଫଙ୍କା କିଛି ଚାହେଁ ନାହିଁ, ଯଦି ଦେବ ତ ଏ ଘଟଣାର ଚିହ୍ନରୂପେ ଭୁଜଙ୍ଗ ହାତରେ ପିନ୍ଧିଥିବା ମୁଦିଟା ଦିଅନ୍ତୁ ।" ନିତ୍ୟାନନ୍ଦ କହିଲେ, "ଏଇଟା ମୋର ବିବାହମୁଦି—ହସ୍ତାନ୍ତର କରିବ ନାହିଁ ବୋଲି ଜବାବ୍ କରିଛି । ଆଚ୍ଛା, ଏ ଡେଢ଼ବର ହାତର ହୀରାବସା ମୁଦିଟା ନିଅନ୍ତୁ ।" ଓକିଲ କହିଲେ, "ମୁଁ ସେପରି ମୂଲ୍ୟବାନ୍ ମୁଦି କଣ କରିବି ? ଚିହ୍ନ ରଖିବାକୁ ସାମାନ୍ୟ ମୁଦିଟିଏ ନେବା କଥା — ଆଉ ଭୁଜଙ୍ଗ ହାତର ମୁଦିଟା ମୁଁ ପସନ୍ଦ କରିଛି । ତାହା ଯଦି ଦେବାର ଇଚ୍ଛା ନାହିଁ, ତେବେ ନ ଦେଲ । ମୋର ବିଶେଷ କାମ ଅଛି ମୁଁ ଆସୁଛି ।" ଏହା କହି ସେ ଚାଲି ବସିଲାରୁ ଏତେ ଉପକାରୀ ଓକିଲଙ୍କୁ ନିରାଶ ବା ଅସନ୍ତୋଷ କରିବା ଭଲ ନୁହେଁ ବୋଲି ନିତ୍ୟାନନ୍ଦ ଦଉଡ଼ି ଯାଇ ମୁଦିଟା ଦେଇ ଆସିଲେ । ଓକିଲ ହସି ହସି ଧନ୍ୟବାଦ ଦେଇ ଘରକୁ ଚାଲିଗଲେ ।

GPNanda Colln., Digitized by srujanika@gmail.com

ନଜ ମାଇଝି ତଲୋତ୍ତମାର କଥିବା ମତେ ନିତ୍ୟାନନ୍ଦ ବନ୍ଧୁ ସଦାନନ୍ଦଙ୍କୁ ସଙ୍ଗେ ନେଇ ଘରକୁ ଗଲେ । ତିଲୋତ୍ତମା ମକଦ୍ଦମାର ହାଲ ପଚାରି ଖୁସୀ ହେଲେ ଓ ଦୁଇବନ୍ଧୁଙ୍କ ଖାଇବା-ପିଇବା ବନ୍ଦୋବସ୍ତ କଲେ । ଖିଆପିଆ ସରିଲା କ ତିଲୋତ୍ତମା ସେମାନଙ୍କୁ ପାନବଟୁଆ ନେଇ ଦେଲେ, ସେତେବେଳେ ନିତ୍ୟାନନ୍ଦଙ୍କ ଭୂଜନ ହାତରେ ବିବାହ ମୁଦି ନ ଦେଖି ବିରକ୍ତ ହୋଇ ପଚାରିଲେ, "ହଇହେ, ତୁମ୍ଭର ଏ ହାତର ମୁଦି କାହିଁ ? ତୁମ୍ଭେ ପରା ଶପଥ କରିଥିଲ ପ୍ରାଣ ଥିବାଯାଏ ସେ ମୁଦି ଛାଡ଼ିବ ନାହିଁ ବୋଲି ?" ନିତ୍ୟାନନ୍ଦ କହିଲେ, "ମୋର ବନ୍ଧୁଙ୍କ ପ୍ରାଣ ଗଲାବେଳେ ମୋର ପ୍ରାଣ ମଧ୍ୟ ଯାଉଥିଲା । ସେତେବେଳେ ମୁଦିଟା ଓକିଲ ହାତକୁ ଗଲା । କଣ କରିବ ? ଏହା ବୋଲି କଣ ଆମ୍ଭର ପ୍ରେମରେ ଆଞ୍ଚ ଆସିବ ?" ତିଲୋତ୍ତମା କହିଲେ, "ଜାଣି ପାରିଲି—ମୋ ଉପରେ ତୁମ୍ଭର ଅକପଟ ପ୍ରେମ କାହିଁ ।" ଏହା କହି ଦୁଃଖିତ ମନରେ ସେ ଘର-ଭିତରକୁ ଚାଲିଗଲେ । ସଦାନନ୍ଦ ଏ ବିଷମ ଅବସ୍ଥା ଦେଖି ମଧୁର କଥାରେ କହିଲେ,"ନାହିଁ ଗୋ ତିଲୋତ୍ତମା, ସବୁ ଦୋଷ ମୋର— କଟେଶ୍ୱରୁ ମୋର ବନ୍ଧୁ ଯାଇ ନ ଥିଲେ ମୁଁ ଏତେବେଳକୁ ସରଗରେ ଥାଆନ୍ତି, ଆଜ ତୁମ୍ଭର ଏ ଅବିଶ୍ୱାସ, ରାଗ, ଦୁଃଖ କିଛି ହୋଇ ନ ଥାନ୍ତା —ମୋର ପୋଡ଼ା କପାଳ ବୋଲି ଏ ସବୁ ଘଟୁଛି — ଆଜ ମୋର ବନ୍ଧୁ ନିତ୍ୟାନନ୍ଦ ତୁମ୍ଭକୁ କେତେ ଭଲ ପାଆନ୍ତି, ତହିଁର ଜାମିନ୍ ମୁଁ ।" ତିଲୋତ୍ତମା ମୁରୁକ ମୁରୁକ ହସି କାହା-ରିଲେ ଓ କହିଲେ, "ଆଚ୍ଛା, ତୁମ୍ଭର ବନ୍ଧୁଙ୍କ ସେ ଭୂଜନ ହାତ ଖାଲି ଥିବାରୁ ଅସୁନ୍ଦର ଦିଶୁଛି । ତେଣୁ ମୁଁ ଆଜ ଆଜ ଗୋଟିଏ ମୁଦି ତୁମ୍ଭର ମାରଫତ୍ ଦେଉଛି । ତୁମ୍ଭ ବନ୍ଧୁଙ୍କୁ କହ ଯେପରି ଆଉ କେବେ ଏହାକୁ ଆଉ କାହାକୁ ନ ଦିଅନ୍ତି ।" ସଦାନନ୍ଦ ଆନନ୍ଦ-

GPNanda Colln., Digitized by srujanika@gmail.com

ମନରେ କହିଲେ, "ହେଉ, ହେଉ, ଏପରି ବୁଝିବା ଲୋକକୁ ପାଉଥିଏ । ଧନ୍ୟବାଦ୍, ଧନ୍ୟବାଦ୍ ।" ସଦାନନ୍ଦ ନିତ୍ୟାନନ୍ଦ ହାତକୁ ମୁଦିଟା ବଢ଼ାଇଦେଲେ । ନିତ୍ୟାନନ୍ଦ ଦେଖିଲେ ଯେ ଏଇଟା ସେହି ହଜିଲା ମୁଦି । ସେ ଡାକାହୋଇ ଉଦ୍ଭିଲୋଡ଼ମାନଙ୍କୁ ପଚାରିଲେ । ସେ ଆମୂଳଚୂଳ ସବୁ କଥା କହିଯିବା ପରେ ସମସ୍ତେ ଚମତ୍କାର ହୋଇଗଲେ । ସମ୍ବଲପୁର ସହରରେ ପ୍ରତିଘରେ ଉଲୋ-ଡ଼ମାଙ୍କ ପ୍ରଶଂସାବାଦ ହେଲା ।



## ୫—ମହୁକ ରସ

ଯେଉଁକାଳର କଥା କୁହାଯାଉଛି, ସେତେବେଳେ ମହାରାଜ-ସିଂହ ସମ୍ବଲପୁରର ରଜା ଥିଲେ । ମହାରାଜସିଂହ ବଡ଼ା କଡ଼ା ଶାସନ କରୁଥିଲେ । ସହରବାସୀ ତ ସହରବାସୀ, ଅଠର ଗଡ଼ଜାତର ଲୋକେ ତାଙ୍କ ନାମ ଧରିଲେ ଡରିଥରି ଯାଉଥିଲେ । ସହରରେ ସେ ଗୋଟିଏ କଡ଼ା ନିୟମ ଜାରି କରିଥିଲେ, ଯେଉଁ ଝିଅ ବାପ ମାଆ ବାଛିଲା ଯୁବକକୁ ବିବାହ କରିବାକୁ ନାହିଁ କରିବ, ତାକୁ ଫାଶି ଦଣ୍ଡ ଦିଆଯିବ ।

ଦିନକର ଜଣେ କରଣବୁଢ଼ା ତାର ସୁନ୍ଦରୀ ଝିଅ ସୁନାଖଡ଼ିକାକୁ ସଙ୍ଗେ ଧରି ରଜାଘରକୁ ଆସିଲା । ତାର ସଙ୍ଗେ ଭୀମସେନ ମହାନ୍ତି ଓ ଦୁର୍ଯ୍ୟୋଧନ ବକ୍ସି ନାମକ ଦୁଇଜଣ ଯୁବକ ମଧ୍ୟ ଆସିଥିଲେ । ବୁଢ଼ା ରାଗରେ ଥରିଥରି ରଜାଙ୍କୁ କହିଲା, "ମହାରାଜ, ମୋର ଝିଅ ସୁନାଖଡ଼ିକା ନାମରେ ନାଲିଶ କରିବାକୁ ଶ୍ରୀଚରଣଙ୍କ ପାଖକୁ ଆସିଛି । ତାର ବୟସ ଷୋହଳ ପୂରିପୂରି ହେଲା । ସେହି ଯେ

GPNanda Colln., Digitized by srujanika@gmail.com

ଦୁର୍ଯୋଧନ ବକ୍‌ସି ଠିଆ ହୋଇଛନ୍ତି ତାଙ୍କୁ ମୋର ଝିଅକୁ ଦେବାର ଜବାବ୍ ହୋଇସାରିଛି । ଏବେ ଝିଅ ମୋର ନାହିଁ କରୁଛି, ଆଉ କହୁଛି, ସେ ଭୀମସେନ ମହାନ୍ତିଙ୍କୁ ଛାଡ଼ ଆଉ କାହାକୁ ବିବାହ କରିବ ନାହିଁ । ମୁଁ ତାକୁ ବୁଝାଇ ବୁଝାଇ ଥକିଗଲିଣି । ହଜୁର ଏହି ଦୁଇ ବାବୁଙ୍କୁ ଦେଖନ୍ତୁ ଓ ମୋ ଝିଅକୁ ବୁଝାଇ ଦିଅନ୍ତୁ, ଯଦି ସେ ନାହିଁ କରେ ତେବେ ସମ୍ବଲପୁର ସହରର ବିବାହ ଆଇନ ଅନୁସାରେ ତାକୁ ଫାସି ଦିଅନ୍ତୁ । ଏପରି ଅମାନିଆ ଝିଅର ଉପଯୁକ୍ତ ଦଣ୍ଡ ଫାସି ।

ମହାରାଜ ସାହେବ ସୁନାଖଣ୍ଡିକାର ସୁନ୍ଦର ରୂପ ଦେଖି ମୋହିତ ହୋଇଗଲେ ଓ ତାକୁ ନାନାପ୍ରକାରେ ବାପର କଥା ମାନିବାକୁ ବୁଝାଇଲେ । ମାତ୍ର ଯୁବତୀର ଗୋଟିଏ କଥା ଯେ ଭୀମସେନକୁ ଛାଡ଼ ସେ ଆଉ କାହାକୁ ବିଭା ହେବ ନାହିଁ । ତହୁଁ ମହାରାଜ ଭୀମସେନକୁ କହିଲେ, "ଅଚ୍ଛା ବାବୁ, ବାଳିକାର ବାପ ଯେତେବେଳେ ତୁମକୁ ଦେବ ନାହିଁ, ତୁମ୍ଭେ ବାଳିକାକୁ ସଫା ଶୁଣାଇ ଦିଅ ଯେ ତୁମ୍ଭେ ବିବାହ କରିବ ନାହିଁ, ତା ହେଲେ ବାଧ୍ୟ ହୋଇ ସେ ଦୁର୍ଯୋଧନକୁ ବିବାହ କରିବ । ନୋହିଲେ ଆଇନ ଅନୁସାରେ ତାର ଫାସି ହେବ—ସେଥିରେ ତୁମର ଲାଭ ବା କଣ ହେବ ?" ଭୀମସେନ କହିଲା, "ହଜୁର, ଯୁବତୀ ମତେ ଭଲପାଏ, ମୁଁ ତାକୁ ଭଲପାଏଁ । କି କୁଳ, କି ସମ୍ବଳ, କି ବିଦ୍ୟା, କି ବୟସ, କୌଣସି ବିଷୟରେ ଦୁର୍ଯୋଧନଠାରୁ ମୁଁ ହୀନ ନୁହେଁ ; ତାପରେ ଦୁର୍ଯୋଧନ ବୈବାହିକ ବୋଲି ଆଉ ଜଣେ ଯୁବତୀକୁ ବିବାହ ହେବ ବୋଲି ଜବାବ୍ ଦେଇ ସାରିଛି—ସେ ବିଚାରି ଅନ୍ୟ ଆଉର ଆଶା ଛାଡ଼ ଦୁର୍ଯୋଧନକୁ ଆଶାକରି ବସିଛି । ହଜୁର ବିଚାର କରନ୍ତୁ, ଭିଏ ଜଣେ ଯୁବତୀକୁ ଆଶାରେ ରଖି ମୋଠାରୁ ସୁନାଖଣ୍ଡିକାକୁ ଛଡ଼ାଇବା

GPNanda Colln., Digitized by srujanika@gmail.com

ନ୍ୟାଯ୍ୟ ହେଉଛି କି ? ଆଜି ବାପ କଥା କହିଲେ ଯେ, ମତେ ଯେ ବନ୍ଧ କରିବ ତାର ମନକୁ ଯଦି ମୁଁ ଆସିଛି, ତେବେ ବାପ ବୁଝିଲେ ନ ବୁଝିଲେ କେତେ ?" ମହାରାଜା ସାହେବ କହିଲେ, "ମୁଁ ଆଇ-ନର ରକ୍ଷକ । ଆଇନ ଅନୁସାରେ ସୁନାଝଣ୍ଟକାର ଫାସି ହେବ । ତାକୁ ରକ୍ଷିବାପାଇଁ ସାତଦିନ ମହଲତ୍ ଦେଉଛି ।"

ପୂର୍ବେ ସମ୍ବଲପୁରର ବସ୍ତିର ଆଜକାଲି ପରି ନ ଥିଲା । ମହାରାଜ ସିଂହଙ୍କ ରାଜୂତ୍ୱବେଳେ ସମ୍ବଲପୁର ସହରର ଉତ୍ତରରେ ମହନ୍ତଛାଖାଇ, ଦକ୍ଷିଣରେ ମହାନଦୀ, ପୂର୍ବରେ ବଟମଙ୍ଗଳା ମନ୍ଦିର ଓ ପଶ୍ଚିମରେ ଛତର ସାଗର ଥିଲା । ମହାରାଜା ଓ ମହାରାଣୀ ପ୍ରତିଦିନ ଛତରସାଗର ପାର ହୋଇ ତାଙ୍କର ଇଷ୍ଟଦେବତା ଶ୍ରୀ ଗୋପାଳଜୀଉ ଓ ସୋମଲେଶ୍ୱରଙ୍କ ଦର୍ଶନ କରୁଥିଲେ । ମହାରାଣୀଙ୍କ ସୁବିଧାପାଇଁ ରାଜନଗରରୁ ଗୋଟିଏ ସୁଡ଼ଙ୍ଗ ଖୋଳାଯାଇଥିଲା ଶ୍ରୀ ଗୋପାଳଜୀଉଙ୍କର ମନ୍ଦିରତକ ଓ ଶ୍ରୀ ଗୋପାଳଜୀଉଙ୍କର ମନ୍ଦିରରୁ ଶ୍ରୀ ସୋମଲେଶ୍ୱରଙ୍କ ମନ୍ଦିରତକ । ସେହି ସୁଡ଼ଙ୍ଗ ଏତେ ପ୍ରଶସ୍ତ ଥିଲା ଯେ, ଜଣେ ଲୋକ ଅକ୍ଳେଶରେ ଠିଆ ହୋଇ ସ୍ୱଚ୍ଛନ୍ଦରେ ଯାଇ ଆସି ପାରୁଥିଲା । ସେହି ସୁଡ଼ଙ୍ଗକୁ ପ୍ରତିଦିନ ସଫାସୁତୁରା କରାଯାଉଥିଲା । ଶ୍ରୀ ଗୋପାଳଜୀ ମନ୍ଦିରର ବଉଳଗଛ ଥିବା ଅଗଣାର ଗୋଟିଏ ଛୋଟ କୋଠରୀରେ ସୁଡ଼ଙ୍ଗର ମୁଖ ଆଜି ମଧ୍ୟ ଦେଖିବାକୁ ମିଳେ । ମାତ୍ର ବହୁଦିନରୁ ସଫାସୁତୁରା କରାଯାଉ ନଥିବାରୁ ସାପ, ବିଛା, ଝିଟିପିଟି, ଏଣ୍ଡୁଅ, ଗିର୍ଲା, କଳକଣ୍ଠୀ ଆଦି ଦୁଷ୍ଟଜୀବମାନେ ଥାଇପାରନ୍ତି ବୋଲି ଭୟରେ ଏବେ କେହି ଯିବାକୁ ସାହସ କରିପାରେ ନାହିଁ । କ୍ରମେ ସମ୍ବଲପୁର ରାଜବଂଶ ଲୋପ ପାଇଲା । ତତ୍କାଳୀନ ଭାରତର ଇଂରେଜସରକାର ସମ୍ବଲ-

GPNanda Colln., Digitized by srujanika@gmail.com

ପୁରକୁ ଖାସ ଦଖଲରେ ରଖି ଶାସନ ପାଇଁ ଇଂରେଜ କର୍ମଚାରୀ-
ମାନଙ୍କୁ ପଠାଇଲେ । ରେଲ ଆସିଲା—ଷ୍ଟେଶନ ପାଖରେ ଖେତରାଜ-
ପୁର ବସ୍ତି, ଫାଟକପାଖରେ ଖ୍ରୀଷ୍ଟିଆନ୍ ପଡ଼ା ବସ୍ତି, ସିପାହୀମାନଙ୍କ
ରହିବାପାଇଁ ପେନ୍‌ସନ୍ ପଡ଼ା ବସ୍ତି ଆଦି ବସିଲା । ସାହେବମାନେ
ଉଚ୍ଚ ସ୍ଥାନ ଦେଖି ମୋତିଝରଣ ପାହାଡ଼ ଉପରେ ଜଙ୍ଗଲସଫା
କରି ବଡ଼ ବଡ଼ କୋଠାମାନ ତିଆରି କରି ରହିଲେ । ନୋହିଲେ
ଆମ୍ଭେ ଯେଉଁ କାଳର କଥା କହୁଛୁ, ସେ ସମୟରେ ମୋତି ଝରଣ
ପାହାଡ଼ଠାରୁ ବସ୍ତି ବହୁତ ଦୂରରେ ଥିଲା ଓ ଅରଣ୍ୟମୟ ଥିଲା ।

ହଁ, ମହାରାଜା ସାହେବ ଯେତେବେଳେ କହିଦେଲେ ଯେ,
ମୁନାଖଡ଼ିକା ସାତ ଦିନ ମଧ୍ୟରେ ଦୁର୍ଯ୍ୟୋଧନକୁ ବିବାହ କରିବାକୁ
ରାଜି ନ ହେଲେ ତାକୁ ଫାଶି ଦିଆଯିବ, ତାର ଗୋଲାପି ଗାଲମାନ
ଶେଠୁଆ ଦିଶିଗଲା ଓ ଅତିଦୁଃଖ ହେତୁ କାନ୍ଦି ପାରିଲା ନାହିଁ ।
ଭୀମସେନ ତାକୁ ଏକାନ୍ତକୁ ଡାକି କହିଲା,

"ସଙ୍ଗାତ, ପୀରତିପଥ ଖସଡ଼ା
ଅଧୀର ନ ହୋଇ, ଧୀରେ ଧୀରେ କରି
ପଦମପୟର ବଢ଼ାରେ, ସଙ୍ଗାତ
ପୀରତି ପଥ ଖସଡ଼ା ।"

ପ୍ରିୟତମେ, ଦୁଃଖ ବା ଶୋକ କରିବାର ଅକାରଣ । ଯଦି
ଆମର ପ୍ରେମରେ କପଟ ଅଛି, ତେବେ ବିରହ ଘଟିବନି ଘଟିବ ।
ନୋହିଲେ ଯେଉଁ କାମଦେବଙ୍କ ନିର୍ଦ୍ଦେଶରେ ଆମ୍ଭେ ପ୍ରେମପାଶରେ
ବନ୍ଧା, ତାଙ୍କ ପିତା ଚକ୍ରଧାରୀ ଶ୍ରୀକୃଷ୍ଣ ଆମମାନଙ୍କ ଶତ୍ରୁର ସକଳ
ଷଡଯନ୍ତ୍ରକୁ ଚକ୍ରରେ ଖଣ୍ଡ ଖଣ୍ଡ କରି ଦେବେ । ହଁ, ଶୁଣ ଶୁଣ ।
ମୋର ଜଣେ ମାଈଁ ମୋତି ଝରଣର ପୂର୍ବଆଡ଼କୁ ଅଳ୍ପ ଦୂରରେ

GPNanda Colln., Digitized by srujanika@gmail.com

ଅଛନ୍ତି । କାଲି ତ ଜନକ ରାତି । ତୁମେ କାଲି ରାତିରେ ଖାଇପିଇ ସାରି ପୁରୁଷ ବେଶଧରି ବୁଲି ବାହାରିଲା ପରି ଘରୁ ବାହାରି ଗ୍ରାମ-ସାଗର ବନ୍ଧ ଅଡ଼କୁ ଆସିବ—ମୁଁ ସେଠାରେ ତୁମକୁ ଟାକିଥିବି । ଦୁହେଁ ମୋତିଝରଣକୁ ଚାଲିଯିବା । ସେଇଟା ତ ସହର ବାହାର । ଏ ଆଇନ ଖାଟିବ ନାହିଁ । ସେଠାରେ ଆମ୍ଭେ ବିବାହ କରି ପଳାଇବା—ବୁଝିଲ—ଠିକ୍ ରାତି ୯ ଟା—ବୁଝିଲ ।" ଭୀମସେନର ଏ ପ୍ରସ୍ତାବ ଶୁଣି ସୁନାଖଡ଼ିକାର ଶୁଖିଲା ମୁହଁରେ ଫେର୍ ହସ ଫୁଟି ଉଠିଲା ।

ଠିକ୍ ସେତିକିବେଳେ ରେବତୀ ଆସି ସୁନାଖଡ଼ିକା ଆଗରେ ବସି ଭେଁ ଭେଁ କାନ୍ଦି କହିଲା, "ଦେଖେ ତ ସଖି, ହେ ପିଲା (ଦୁର୍ଯ୍ୟୋଧନ)ର କଥା । ମତେ ବାହା ହେବ ବୋଲି ଗୃହଆଡ଼େ ଡେଙ୍ଗୁରା ବାଜଇଲା—ଏତେବେଳେ ତୁମକୁ ମନ କରି ମତେ ଆଡ଼ ଆଖିରେ ଦେଖୁଛି । ଆଉ ପଚାରୁ ନାହିଁ ।" ସୁନାଖଡ଼ିକା କହିଲେ, "ସେ ମତେ ମନ କଲେଁ କଣ ହେବ ? ମୁଇଁ ମନ କଲେଁ ତ ? ମୋର ହାତ ଧରିବାର ଆଶା ଛାଡ଼ୁଥାଉ । ମୁଁ ଭୀମସେନ କାଲି ରାତାରାତି ମୋତିଝରଣ ପଳାଇ ଯିବୁଁ । ସେଠାରେ ବାହା ହେବୁ ।"

ରେବତୀ ଏହା ଶୁଣି ଖୁସିହେଲା ଓ ତରତରରେ ତାଙ୍କ ଘରକୁ ଲେଉଟିଲା । ମାଇକିନିଅ ବୁଦ୍ଧି ବୋଲି ଲୋକେ ଯେ ଉପହାସ କରନ୍ତି ତାହା ଠିକ୍ । ବାଟରେ ରେବତୀ ବିଚାରିଲା, "ଭୀମସେନ ଓ ସୁନାଖଡ଼ିକା ପଳାଇଯିବା କଥାଟା ଦୁର୍ଯ୍ୟୋଧନକୁ କହିଦିଏ ଯେ, ସେ ସୁନାଖଡ଼ିକାର ଆଶା ଛାଡ଼ି ମତେ ଭଲ ପାଇବ ଓ ବାହା ହେବ ।" ରେବତୀ ସିଧାସିଧା ଦୁର୍ଯ୍ୟୋଧନ ଘରକୁ ଯାଇ ତାକୁ କହିଦେଲା । ଦୁର୍ଯ୍ୟୋଧନ ରେବତୀକୁ ସେଥିପାଇଁ ଭଲପାଇବା ଦୂରେ ଥାଉ

GPNanda Colln., Digitized by srujanika@gmail.com

ଧନ୍ୟବାଦଟେ ମଧ୍ୟ ଦେଇ ନାହିଁ ଓ କହିଲା, "ଦେଖାଯିବ, ଭୀମକୁ ସୁନାଖଣ୍ଡିକାର ହାତ ଧରାଇ ଦେବନାହିଁ । ସେଥିପାଇଁ ଯାହା ଯାହା ଉପାୟ କରିବାର କଥା, ଯନ୍ତ୍ର ମନ୍ତ୍ର ଯିବାର କଥା ସବୁ କରିବ । କାଲି ମୁଁ ବି ତାଙ୍କର ପିଛା ନେବ, ଦେଖାଯିବ ।"

ସଂଚକୁ ସତ ଆରବନ କଣ୍ଠ ଅନୁସାରେ ସୁନାଖଣ୍ଡିକା ରାମ-ସାଗର ବନ୍ଧ ଆଡ଼କୁ ଆସିଲାକ୍ଷଣି ଭୀମସେନ ବନ୍ଧ ପାଖରୁ ଯାଇ ତାକୁ ଭେଟିଲା ଓ ଦୁହେଁ ବସ୍ତି ବାହାର ହୋଇ ମୋତିଝରଣ ଆଡ଼କୁ ଗ୍ଲଲେ । ଦୁର୍ଯୋଧନ ତ ଆଗବନରୁ ଖବରପାଇ ତା କରେକରେ ଥାଏ । ସେ ମଧ୍ୟ କହିଦୂର ପଛରେ ଥାଇ ସେମାନଙ୍କର ବାଟେ ବାଟେ ଗ୍ଲଲା । ରେବଣ୍ଡ ତ ଆଗରୁ ସବୁ ଶୁଣିଥିଲା, ସେ ବି ଦୁର୍ଯୋଧନର ଅଜଣାରେ ତାର ପିଛା ଧରିଲା । ସୁନାଖଣ୍ଡିକା ଓ ଭୀମସେନ ଏକସଙ୍ଗେ ପ୍ରଥମେ ମୋତିଝରଣ ଭିତରକୁ ପଶିଲେ । ସେମାନଙ୍କର ଅଜଣାରେ ବହୁତ ଦୂରରେ ରହି ଦୁର୍ଯୋଧନ ପଶିଲା । ତାର ପଛେ ପଛେ ରେବଣ୍ଡ ଗଲା । ଗ୍ଲଲୁଗ୍ଲଲୁ ରେବଣ୍ଡ କହୁଥାଏ, "ମତେ କେତେ ଆଶା ଦେଇ ରଖିଲ, ସୁନାଖଣ୍ଡିକା ତ ଜଣକର ଆଶ୍ରାରେ ରହିଲାଣି, ତାର ଆଶା ଛାଡ଼, ମୁଁ ତୁମ୍ଭଙ୍କୁ ଯେ ପଟଚପଟ ଆଶା କରିଛୁ । ମୋର ସେ ଆଶାଟା ରଖ ।" ଦୁର୍ଯୋଧନ ମଝିରେ ମଝିରେ ବିରକ୍ତିସ୍ୱରରେ କହୁଥାଏ, "ଆରେ, ଏ ତ ବଡ଼ ପରପଞ୍ଚିଆ ସ୍ତ୍ରୀଲୋକଟି । ମୁଁ ତ ହଜାର ଥର କହି-ସାରିଛି ଯେ ତୋରଠାରେ ମୋର ଟିକେ ବି ମନ ନାହିଁ, ଫେର୍ କାହିଁକି ପଛେ ପଛେ ଲେଙ୍ଗୁଡ଼ୁଛୁ । ଏହିପରି ଉତ୍ତର ପ୍ରତ୍ୟୁତ୍ତର କରିଗ୍ଲଲଥାନ୍ତି ।

ହଁ, ଏଠାରେ କହିରଖିବା ଉଚିତ ଯେ ସମ୍ବଲପୁରରେ ଶ୍ରୀ ସୋମଲେଶ୍ୱରୀ, ଶ୍ରୀ ପାଟଣେଶ୍ୱରୀ, ଶ୍ରୀ ବୁଢ଼ାପୁରି, ଶ୍ରୀ ଦଧିବାମନ,

GPNanda Colln., Digitized by srujanika@gmail.com

ଶ୍ରୀ ବାଲୁଙ୍କେଶ୍ୱର, ଶ୍ରୀ କୋଠା ଜଗନ୍ନାଥ, ଶ୍ରୀ ଗୋପାଳଜୀ, ଶ୍ରୀରାମଜୀ, ଶ୍ରୀ ଅନନ୍ତଶଯ୍ୟା, ଶ୍ରୀ ବଟମଙ୍ଗଳା, ଶ୍ରୀ ବୁଢ଼ାରାଜା ଆଦି ଅସଂଖ୍ୟ ଦେବାଦେବୀଙ୍କର ମନ୍ଦିର ଅଛି । ଏହି ମନ୍ଦିରମାନଙ୍କରେ ସମ୍ବଲପୁର ରାଜାମାନେ ପ୍ରତିଦିନ ବିଧିମତେ ପୂଜା କରାଉଥିଲେ । ପବିତ୍ର ଧୂପଗୁଗ୍ଗୁଳ ସୁଗନ୍ଧରେ ସମ୍ବଲପୁର ସହର ଓ ଆଖପାଖ ମହକ ଉଠୁଥିଲା । ସବୁରାତିରେ ଗନ୍ଧର୍ବମାନେ ସେମାନଙ୍କର ରାଜା ଓ ରାଣୀଙ୍କ ସହିତ ମୋତିଝରଣ ଅରଣ୍ୟକୁ ଆସି ନାନା ଗୀତବାଦ୍ୟ, ମଜାମଜ-ଲିସ କରି ପ୍ରଭାତ ହେଲା କ୍ଷଣି ଚାଲିଯାଉଥିଲେ । ଆମ୍ଭେ ଯେଉଁ ରାତି କଥା କହୁଛୁ ସେହି ରାତିରେ ମଧ୍ୟ ସେମାନେ ମୋତିଝରଣ ଆସିଥିଲେ । ସେ ଦିନ ଗନ୍ଧର୍ବ ରାଜା ଓ ରାଣୀଙ୍କ ମଧ୍ୟରେ ଗୋଟିଏ ଝଗଡ଼ା ହୋଇଥାଏ । ଗନ୍ଧର୍ବରାଣୀ ଗୋଟିଏ ଶ୍ରେଷ୍ଠ ମନୁଷ୍ୟ ପିଲାକୁ ଅତି ସୁନ୍ଦର ଥିବାର ଦେଖି ନିଜର ହେଡ଼ଲଗା ଚାକର କରିବାକୁ କେଉଁଠାରୁ ନେଇ ଆସିଥାନ୍ତି । ସେହି ପିଲାର ସୁନ୍ଦରରୂପ ଓ ବ୍ୟବହାର ଦେଖି ଗନ୍ଧର୍ବରାଜା ବହୁତ ଖୁସୀ ହୋଇ ତାକୁ ନିଜର ହେଡ଼ ଲଗା ଚାକର କରିବାକୁ ରାଣୀକୁ କହିଲେ । ରାଣୀ ସଫା ନାହିଁ କରିଦେଲେ । ରାଜା ଜିଦ୍ ଧରିବାରୁ ରାଣୀ ସମସ୍ତ ଅପ୍ସରାଙ୍କୁ ଡାକନେଇ ମୋତିଝରଣର ଅନ୍ୟ ଏକପାଖକୁ ଚାଲିଗଲେ । ଏଥିରେ ଗନ୍ଧର୍ବ ରାଜାଙ୍କ ମନରେ ବିରକ୍ତି, ରାଗ ଓ ଲଜ୍ଜା ହେଲା ।

ସେ ପ୍ରତିଶୋଧ ନେବାପାଇଁ ତାଙ୍କର ଜଣେ ବିଶ୍ୱାସୀ ଚାକର ମଟିଆକୁ ଡାକିଲେ । ମଟିଆ ଅସାଧ୍ୟ ସାଧନ କରିପାରେ । ବୁଝିଥିଲେଁ ଘରେ କେହି ନ ଉଠିବା ଆଗରୁ ଘର ଓଳାଇଦିଏ, କାଠ କାଟିଦିଏ, ପାଣି ବୋହିଆଣି ରଖିଦିଏ, ନଆଁ ଜାଳିଦିଏ, ଅନ୍ୟ ଘରୁ ଅପୂର୍ବ ଜିନିଷମାନ ବୋହିଆଣେ । ମାତ୍ର ବିରକ୍ତ ହୋଇଥିଲେ

GPNanda Colln., Digitized by srujanika@gmail.com

ଘରଦ୍ୱାର ଘୁରିଆଡ଼େ ବସ୍ତା ବୁଣି ଦେବ, ଲୁଚ ଚିଅଣ ହାଣ୍ଡିରେ ମଧ୍ୟ ବସ୍ତା ପକାଇଦେବ, ଛୁଆମାନଙ୍କୁ ହସାଇ ହସାଇ ଅଲଜଅ କରିଦେବ, ନୋହିଲେ କନ୍ଦାଏ, ଘରର ଜିନଷ ଅନ୍ୟଘରକୁ ନେଇଯାଏ । ସମସ୍ତ ସମୟରେ ମଜା ଦେଖିବାପାଇଁ ନାନା ପରକାର କଉତୁକ କରେ । ଯେଉଁଠାରେ ଅନେକ ବାଳକବାଳିକା ବା ଯୁବକ ଯୁବତୀ ଖୁସିଗଳ୍ପ କରୁଥାନ୍ତି, ସେଠାରେ ଗୋଟିଏ ତିନଗୋଡ଼ିଆ ଚଉକାହୋଇ ରହିଯାଏ ଓ କେହି ବସିଲେ କ୍ଷଣି ଉଭେଇଯାଏ । ଫଳରେ ବସିବା-ଲୋକ ଚିତ୍‌ପଟାଙ୍ଗ ହୋଇ ପଡ଼ିଯାଏ । କେତେବେଳେ ବୁଢ଼ାବୁଢ଼ୀ ଘି, ସରବତ, ଗୋରସ ପିଉଥିଲାବେଳେ ସେ ଭିତରୁ ବାହୁଡ଼ି ହୋଇ ବାହାରି ପଡ଼େ କି ପିଉଥିବା ଲୋକ ଚମକି ପଡ଼େ ଓ ତାର ହାତରୁ ସବୁ ଖସିପଡ଼େ, କେତେବେଳେ ମନ୍ତ୍ର ବୁଲୁଥିବାବେଳେ ଚକ୍‌ଣାଟିକ ନେଇଯାଏ, ଇଆଡ଼େ ମନ୍ତ୍ରହାସ ଚକ୍‌ଣା ବାହାର କରିବାକୁ ଅଥା ମଥା ହୋଇ ମାହାଳିଆ ବୁଲୁଥାଏ । କେତେବେଳେ ଆଖୁରସ ବା ବା ଦୁଧ ଆଉଟିଲା ବେଳେ ସେ ଭିତରେ ପଶି ଏପରି କରିଦେଏ ଯେ ଆଖୁରସ ବା ଦୁଧ କେତେବେଳେ ଅଣ୍ଟେ ନାହିଁ । ଏ ପାଖେ ଆଉଟିଲା ଲୋକ ବୋଝା ବୋଝା କାଠ ପୋଡ଼ାଉଥାଏ ଓ ଝାଳରେ ଗାଧୋଉଥାଏ । କେତେବେଳେ ଜୁକୁଜୁକିଆପୋକ ମୁଠା ମୁଠା ଆଣି ଟୋଟିଏ ଗଛଡାଳରେ ବସାଇ ବାଟଚଲା ଲୋକକୁ ବାଟ ଦେଖାଇ ଦେଖାଇ କେଉଁ ଅବାଟିଆ ଅକାଟିଆ ସ୍ଥାନକୁ ନେଇଯାଏ ।

ଗନ୍ଧର୍ବରାଜା ମଟିଆକୁ କହିଲେ, "ବାବୁ, ଯା ତ ଜଲ୍‌ଦି—ମୋତୋରଣର ଉତ୍ତର ପାଖରେ ଗୋଟିଏ ବଡ଼ ପଲାଶଗଛରେ ମଡ଼ାଙ୍ଗ ଅଛି, ତହିଁରେ ବାଇଗଣିଆ ଫୁଲ ଫୁଟିଛି । ସେଥିରୁ କିଛି ତୁରନ୍ତ ନେଇଆସ ।" ମଟିଆ ଦେଖୁଁ ଦେଖୁଁ ଚାଲିଗଲା । ସେତେ-ବେଳେ ଦୁର୍ଯୋଧନ ଓ ରେବତୀ ପୂର୍ବପରକାରେ ଉତ୍ତରପ୍ରତ୍ୟୁତ୍ତର

GPNanda Colln., Digitized by srujanika@gmail.com

କରି ଚାଲିଗଲେ । ରେବତୀର ଦୁଃଖ ଗନ୍ଧର୍ବରାଜାଙ୍କୁ ବହୁତ ବାଧିଲା । ମଟିଆ ସେ ଫୁଲ ଆଞ୍ଜୁଳେ ଧରି ପହଞ୍ଚିଲା । ସେଥିରୁ କିଛି ଫୁଲ ମଟିଆକୁ ଦେଇ ଗନ୍ଧର୍ବରାଜା କହିଲେ, "ମଟିଆ, ଏହା ମହମା ଫୁଲ । କେହି ଶୋଇଥିଲାବେଳେ ତାର ଆଖିପତାରେ ଏ ରସ ଟିକଏ ଛୁଆଁଇଦେଲେ, ସେ ଉଠିଲାକ୍ଷଣି ଯାହାକୁ ଦେଖିବ, ତାକୁ ଏତେ ଭଲପାଇବ ଯେ ଆଉ ଛାଡ଼ିବ ନାହିଁ, ଇ ବାଟରେ ଦୁର୍ଯ୍ୟୋ-ଧନ ଓ ରେବତୀ ବୋଲି ଦୁଇଜଣ ମନୁଷ୍ୟ ଯାଇଛନ୍ତି । ଦୁର୍ଯ୍ୟୋଧନ ରେବତୀକୁ ଆଗ ଭଲ ପାଉଥିଲା, ଏବେ ଧିକ୍କାରୁଛି, ତେଣୁ ରେବତୀର ମନରେ ଭାରି ଦୁଃଖ । ତୁ ଯା ଯେ ଦୁର୍ଯ୍ୟୋଧନ ଶୋଇଥିଲାବେଳେ ତାର ଆଖିପତାରେ ଏ ଫୁଲରସ ଟିକଏ ଲଗାଇଦେବୁ । ରେବତୀ ତ ପାଖରେ ଥିବ, ଦୁର୍ଯ୍ୟୋଧନ ଉଠିଲା-କ୍ଷଣି ତାକୁ ଦେଖିବ ଓ ପ୍ରାଣପରି ଭଲ ପାଇବ । ଯା,ଯା,ପରର ମଙ୍ଗଳ କଲେ ଭଗବାନ୍ ଆମ୍ଭର ମଙ୍ଗଳ କରିବେ ।" ମଟିଆ ତରତର ହୋଇ ଚାଲିଗଲା । ବାଟରେ ସେ ଗୋଟିଏ ବଡ଼ମୋଟା ଲୋକକୁ ଦେଖିଲା । ତାର ନାମ ଖରଖସ୍ । ନାମ ଅନୁସାରେ ତାର ଗୁଣ-ଗ୍ରାମ—ବଡ଼ ଦେହ, ଖଦଡ଼ିଆ ଚମ, ଝାମ୍ପୁରୁ ବାଳ, ମହାଧୀର ଚାଲି । ମଟିଆ ତାର ମୁଣ୍ଡକୁ ଗୋଟିଏ ଗଧର ମୁଣ୍ଡ କରି ଦେଇ ଚାଲିଗଲା ।

ମଟିଆକୁ ପଠାଇଦେଇ ଗନ୍ଧର୍ବରାଜା ସେହି ମହମା ଫୁଲ ଧରି ଗନ୍ଧର୍ବରାଣୀ ଯେଉଁଠାରେ ଥିଲେ ସେଠାକୁ ଆସି ଦେଖିଲେ ଯେ ରାଣୀ ଓ ସବୁ ଅପସରା ଶୋଇଛନ୍ତି । ସେ ଫୁଲରସ ଚିପୁଡ଼ି ରାଣୀଙ୍କ ଆଖିପତାରେ ଟିକଏ ଛୁଆଁଇ ଦେଇ ଚାଲିଗଲେ । ଗଧମୁଣ୍ଡିଆ ଖରଖସ୍ ବଡ଼ ପାଟିକରି ଶଙ୍ଖବଜାଇଲା ପରି ଗୀତ ଗାଇଗାଇ ସେ ବାଟରେ ଆସିଲା । ସେ ସଙ୍ଗୀତରେ ରାଣୀଙ୍କ ନିଦ ଭାଙ୍ଗିଗଲା କ

GPNanda Colln., Digitized by srujanika@gmail.com

ତାଙ୍କ ଆଖି ଖର୍‌ଖସ୍ ଉପରେ ପଡ଼ିଲା । ସେ ତାକୁ ଡାକ ବସାଇଲେ ଓ ବର ବୋଲି ବହୁତ ଆଦର କରି ରଖିଲେ । କାହିଁ ଗନ୍ଧର୍ବରାଜାଙ୍କ ମଧ୍ୟରୁ ସୁଖକର ସଙ୍ଗ ଛାଡ଼ି ଗନ୍ଧର୍ବରାଣୀ ମହିମା ପ୍ରଭାବରେ ରଧମୁଣ୍ଡିଆ ଟର୍‌ଖସ୍ ସଙ୍ଗକୁ ସୁଟକର ମଣିଲେ ।

ସେ ଆଡ଼େ ମଟିଆ ଦୁର୍ଯ୍ୟୋଧନ ଓ ରେବକଣ୍ଠକୁ ଖୋଜିବାକୁ ଯାଇ ଖ୍ରୀମସେନ ଓ ସୁନାଖଡ଼ିକାକୁ ଶୋଇଥିବା ଦେଖିଲା । ଖ୍ରୀମସେନକୁ ଦୁର୍ଯ୍ୟୋଧନ ଭାବି ତାର ଆଖିରେ ଟିକିଏ ମହିମା ଲଗାଇ ଦେଲା ଓ ପଳାଇଗଲା । ସେହି ବାଟରେ ଦୁର୍ଯ୍ୟୋଧନ ଓ ତାର ପଛେ ପଛେ ରେବକଣ୍ଠ ଆସିଲେ । ରେବକଣ୍ଠର ସ୍ୱର ଶୁଣି ଖ୍ରୀମସେନର ନିଦ ଭାଙ୍ଗିଗଲା ଓ ତାର ଆଖି ରେବକଣ୍ଠ ଉପରେ ପଡ଼ିଲା କି ତାର ମନ ସୁନାଖଡ଼ିକାକୁ ଭୁଲି ରେବକଣ୍ଠ ଆଡ଼କୁ ଗଲା । ମାତ୍ର ରେବକଣ୍ଠର ମନ ଦୁର୍ଯ୍ୟୋଧନ ଆଡ଼କୁ, ଦୁର୍ଯ୍ୟୋଧନର ମନ ସୁନାଖଡ଼ିକା ଆଡ଼କୁ ଓ ସୁନାଖଡ଼ିକାର ମନ ଖ୍ରୀମସେନ ଆଡ଼କୁ ରହିଛି । ମାତ୍ର ବର୍ତ୍ତମାନ ଖ୍ରୀମସେନ ସୁନାଖଡ଼ିକାକୁ, ସୁନାଖଡ଼ିକା ଦୁର୍ଯ୍ୟୋଧନକୁ, ଦୁର୍ଯ୍ୟୋଧନ ରେବକଣ୍ଠକୁ କି ରେବକଣ୍ଠ ଖ୍ରୀମସେନକୁ ଚାହୁଁନାହାନ୍ତି, ସେମାନେ ଗନ୍ଧର୍ବମାନଙ୍କୁ ଦେଖିପାରୁ ନଥିଲେହେଁ ଗନ୍ଧର୍ବରାଜା ସେମାନଙ୍କୁ ଫର୍ଚ୍ଛା ଦେଖି ପାରୁଥିଲେ ଓ ସେମାନଙ୍କର ଦୁଃଖ ତାହାଙ୍କୁ ଖୁବ୍ ବାଧିଲା । ମଟିଆ ଭୁଲକରିଛି ବୋଲି ସେ ବୁଝି ପାରିଲେ ।

ମଟିଆ ଫେରି ଆସିଲାବେଳେ ଗନ୍ଧର୍ବରାଣୀ ରଧମୁଣ୍ଡିଆ ଟର୍‌ଖସ୍‌କୁ ଚୁମା ଦେଉଥିବା ଦେଖି ବଡ଼ ଦୁଃଖିତ ହେଲା ଓ ଗନ୍ଧର୍ବରାଜାଙ୍କୁ କହିଲା । ଗନ୍ଧର୍ବରାଜା ଗନ୍ଧର୍ବରାଣୀଙ୍କ ପାଖକୁ ଯାଇ ତାଙ୍କର ଦେହଲଗା, ସୁନ୍ଦର ମନୁଷ୍ୟ ପିଲାକୁ ମାଗିଲେ । ଏଇଥର ସେ

GPNanda Colln., Digitized by srujanika@gmail.com

ହଠାତ୍ ସୀଙ୍ଗକାରକର ପିଲକୁ ନେଇଦେଲେ । କାରଣ, ବର୍ତ୍ତମାନ ତାଙ୍କର ସବୁ ସଙ୍ଗକ ଖର୍‌ଖସ୍ ଉପରେ ମହମା ରସର ପ୍ରଭାବରୁ । ଗନ୍ଧର୍ବରାଜାଙ୍କର ଇଚ୍ଛା ପୂର୍ଣ୍ଣ ହେଲା କି ରାଣୀଙ୍କ ଦୁଃଖରେ ଦୁଃଖିତ ହୋଇ ରାଣୀଙ୍କ ଶୋଇବା ସମୟକୁ ଜଗି ରହିଲେ । ରାଣୀ ଗଧମୁଣ୍ଡିଆର ସେବାରେ ଥକି ଯାଇ ଯେପରି ଶୋଇପଡ଼ିଲେ ଗନ୍ଧର୍ବରାଜା ତାଙ୍କ ଆଖିପତାରେ ଟିକଏ ଫୁଲରସ ଲଗାଇ ଦେଇ ଉଠାଇଦେଲେ । ରାଣୀ ଆଗରେ ଗନ୍ଧର୍ବ ରାଜାଙ୍କୁ ଠିଆହେବା ଦେଖି 'ପ୍ରିୟତମ, ପ୍ରିୟତମ'କହି କୁଣ୍ଢାଇ ପକାଇଲେ । ସେ ପାଖେ ମଟିଆ ଯେ ଖର୍‌ଖସ୍‌ର ଗଧ ମୁଣ୍ଡଟା ବଦଳାଇ ଦେଇ ମନୁଷ୍ୟମୁଣ୍ଡ କରିଦେଇ ପାରିଥାଏ ।

ତାପରେ ଗନ୍ଧର୍ବରାଜା ମଟିଆକୁ କହିଲେ, "ଯା, ତୁ ଶୀଘ୍ର ଯା ସେହି ବୃନ୍ଦାବନ ଭୋର ଭୂଲ ହେଉ ବହୁତ ଦୁଃଖ ପାଇଲେଣି । ଭୀମସେନ ସୁନାଖଣ୍ଡିକାକୁ ଗୋଟିଏ ଜାଗାକୁ ଏବଂ ଦୁର୍ଯ୍ୟୋଧନ ରେବତୀକୁ ଅନ୍ୟ ଏକ ଜାଗାକୁ ନେଇଯିବୁ—ସେମାନେ ତ ଥକା ହୋଇ ସାରିଲେଣି, ଶୀଘ୍ର ଶୋଇପଡ଼ିବେ । ଦୁର୍ଯ୍ୟୋଧନ ଓ ଭୀମସେନର ଆଖିପତାରେ ଟିକଏ ମହମାରସ ଲଗାଇଦେବୁ ଓ ନାନାପ୍ରକାର ଶବ୍ଦ କରିବୁ, ସେମାନେ ଉଠିଲେ କି ଦୁର୍ଯ୍ୟୋଧନ ରେବତୀକୁ ଓ ଭୀମସେନ ସୁନାଖଣ୍ଡିକାକୁ ଦେଖିବେ ଓ ଭଲପାଇବେ । ଗନ୍ଧର୍ବରାଜାଙ୍କ ଆଦେଶ ଅନୁସାରେ ମଟିଆ ସେପରି କଲା । ଦୁର୍ଯ୍ୟୋଧନ ଓ ରେବତୀ ପରସ୍ପରକୁ ଭଲପାଇଲେ, ଭୀମସେନ ଓ ସୁନାଖଣ୍ଡିକା ମଧ୍ୟ ସେପରି ପରସ୍ପରକୁ ଭଲ ପାଇଲେ । ସେ ଦିନ ରାତିରେ ସମ୍ବଲପୁର ରାଜା ମହାରାଜସିଂହ ସୁନଖଣ୍ଡିକାଙ୍କ ବାପ କରଣବୁଢ଼ାକୁ ଧରି ମୋହିନୀହରଣ ଜଙ୍ଗଲକୁ ଶିକାର କରି ଯାଇଥିଲେ ।

GPNanda Colln., Digitized by srujanika@gmail.com

ଠିକ୍ ସକାଳ ପାହୁଆସୁଥାଏ । ଗନ୍ଧର୍ବମାନେ ସହରକୁ ଚାଲି-ଗଲେ--ଦୁର୍ଯ୍ୟୋଧନ ଓ ରେବତୀ ହସହସ ମୁହଁରେ ଆସି ମହାରାଜାଙ୍କୁ ଦର୍ଶନ କଲେ । ଏହା ଦେଖି ମହାରାଜା କାହାହୋଇ କଣ ପଚାରିବାକୁ ଯାଉଥିଲେ, ମାତ୍ର ଭୀମସେନ ଓ ସୁନାଖଣ୍ଡକାକୁ ଦେଖି ଆଉ କିଛି ପଚାରିବାର ଆବଶ୍ୟକ ମନେକଲେ ନାହିଁ । କରଣବୁଢ଼ା ଝିଅ ସୁନାଖଣ୍ଡକାକୁ ଦେଖି ଓ ସବୁକଥା ଶୁଣି ଖୁସି ହେଲେ । ମହାରାଜ ସେ ଚାରିଜଣଙ୍କୁ ସଙ୍ଗେ ଧରି ସହରକୁ ଫେରିଲେ ଓ ନିଜ ଖର୍ଚ୍ଚରେ ବଡ଼ ଆଡ଼ମ୍ବରେ ଉଭୟ ଦଳର ବିବାହ କରିଦେଲେ । ଜାକଜମକରେ ଭୋଜିଏ ଭୋଜ ଦିଆଗଲା । ସହରବାସୀ ସମସ୍ତେ ଖୁସି ହେଲେ ଓ ମହାରାଜାଙ୍କୁ ପ୍ରଶଂସା କଲେ ।

——*——

## ୬-ସମ୍ପତ୍ତାନୀ ଘୋଡ଼ୀକୁ ହାରମ୍‌ଜାଦା ସୁଆର୍

ବହୁତଦିନ ହେଲା ବରଗଡ଼ରେ ଗ୍ରାମପଧାନ ବୋଲି ଜଣେ ଚଷା ବୁଢ଼ା ଥିଲା । ତାର ଦୁଇଟା ଝିଅ ଥିଲେ—ସାନ ଝିଅ ମଥୁରା ଯେପରି ସୁନ୍ଦରୀ, ସେପରି ଶାନ୍ତ । ଆଉ ବଡ଼ଝିଅ ମନ୍ଦୋ ମଥୁରାପରି ସୁନ୍ଦରୀ, ମାତ୍ର ବଡ଼ରାଗୀ, ଚଡ଼ଚଡ଼ୀ ଓ ଏକଜିଦିଆ ; ସମସ୍ତେ ତାକୁ ଚଣ୍ଡିଚଣ୍ଡୀ ବୋଲି ଡାକୁଥିଲେ ।

ମଥୁରାକୁ ବାହାହେବାଲାଗି କେତେଆଡ଼ୁ କେତେ ବର ଆସିଲେ, ମାତ୍ର ମନ୍ଦୋ ସୁନ୍ଦରୀ ଥିଲେ ହେଁ ତାର ଗୁଣଗ୍ରାମ ଶୁଣି ତାକୁ ବାହା ହେବାପାଇଁ କେହି କେବେ ଆସିଲେ ନାହିଁ । ସାନଝିଅକୁ ଆଗ ବାହାକରିଦେଲେ ବଡ଼ଝିଅ ରହିଯିବ ବୋଲିକରି ପଧାନବୁଢ଼ା ସମସ୍ତଙ୍କୁ ସଫା ଶୁଣାଇ ଦେଉଥିଲା ଯେ, ବଡ଼ଝିଅର ବାହାକରି ନ

GPNanda Colln., Digitized by srujanika@gmail.com

ସାରଲେ ସାନଝିଅକୁ ବାହା କରିବେନାହିଁ । ତହୁଁ ମଥୁରାକୁ ଯେ ଯେ
ବରହେବାକୁ ଆସୁଥିଲେ, ସେମାନେ ମନ୍ଦୋ ପାଇଁ ଗୋଟିଏ ବର
ଖୋଜିବାର ପ୍ରସ୍ତାବ କଲେ ।

ଠିକ୍ ସେହିଦିନ କମଗାଁରୁ ଜଣେ ଯୁବକ ବରଗଡ଼ ଆସିଗଲା ।
ବୁଝାବୁଝି କରିବାରେ ସେ ବି ବାହା କରିବାଲାଗି ଜଣେ ଯୁବତୀ
ଖୋଜରେ ଆସିଥାଏ । ତାର ନାଁ ଚଞ୍ଚଳ ସ୍ୱାଇଁ, ଆମଗାଁ ସ୍ୱାଇଁଘରର
ପିଲା । ତାର ବାପର ଅନେକ ସମ୍ପତ୍ତି ଓ ଗୋଟିଏ ପୁଅ ଚଞ୍ଚଳ,
ସତେ ଚଞ୍ଚଳ—ଭାରି ମିଳାପି, ଦେଖୁଁ ଦେଖୁଁ ଅଚିହ୍ନା ଲୋକର ସହିତ
ଚିହ୍ନାର ହୋଇଯାଏ। ତାର ପୂର୍ବ ପରିଚିତ ବନ୍ଧୁ ଗୋପାଳ ବି ମଥୁରାକୁ
ବାହାକରିବା ପାଇଁ ଆସିଥାଏ । ତାର ସଙ୍ଗେ ଚଞ୍ଚଳର ଦେଖାହେଲା ।
ଚଞ୍ଚଳକୁ ଗୋପାଳ କହିଲା, "ମହାଶୟ, ଏ ଗ୍ରାମ ପଧାନର ବଡ଼
ଝିଅ ମନ୍ଦୋ ବଡ଼ ସୁନ୍ଦର, କିନ୍ତୁ ଟିକିଏ ଚିଡ଼ଚିଡ଼ି ଆଉ ଏକଜିଦିଆ
ପରେ, ନ ହେଲେ ବାହା ହେବାର ପରି ଝିଅଟେ"। ଚଞ୍ଚଳ ଗ୍ରାମପଧାନ
ପାଖକୁ ଯାଇ କହିଲା, "ତୁମର ମନ୍ଦୋ ବୋଲି ଭାରି ସୁନ୍ଦରୀ ଝିଅଟି
ଅଛେ ପରା: ଦେବ ବୋଲେ ମୁଇଁ ବାହା ହେବି । ସେ ସୁନ୍ଦର
ଯେତେ, ଶାନ୍ତ ସେତେ ବୋଲି ମୁଁ ଶୁଣିଛି ।"

ଗ୍ରାମ ଓ ଚଞ୍ଚଳ ଏପରି କଥାବାର୍ତ୍ତା ହେଉଥିଲା ବେଳେ
ମନ୍ଦୋର ସଙ୍ଗୀତ ମାଷ୍ଟର ସେ କୋଠରୀ ଭିତରକୁ ହରବର ହୋଇ
ପଶି ଆସିଲା—ତାର ମୁଣ୍ଡ ଫାଟି ରକ୍ତ ଝୋଲଝୋଲ୍ ହୋଇ ବୋହି
ଯାଉଥାଏ । ମନ୍ଦୋ ସେ ଆର କୋଠରୀରୁ ତାକୁ ଲଇଖିଆ,
ଟୋକୁଣୁଆ, ଅଁଟକୁରା, ବାଡ଼୍ଧରା ବୋଲି ଗାଳି ଦେଉଥାଏ । ଚଞ୍ଚଳ
କହିଲା, "ବାଃ କେଡ଼େ ସାହସୀ ? ମୁଁ ନିଶ୍ଚେ ବାହାହେବି ।" ତହୁଁ
ଚଞ୍ଚଳ ଗ୍ରାମକୁ କହିଲା, "ମତେ ଜୁଆଇଁ କରିବାର ଇଚ୍ଛା ଥିଲେ ତୁମର
ଝିଅକୁ ଟିକିଏ ଡାକିଦିଅ ଯେ ଟିକେ ଦେଖାସାକ୍ଷାତ୍, କଥାବାର୍ତ୍ତା

GPNanda Colln., Digitized by srujanika@gmail.com

ହେବୁ ।” ରାମ ମନ୍ଦୋକୁ ଡାକ ଆଣିଲା ଓ ତାମ ବାହାନାରେ ଅନ୍ୟ କୋଠରୀକୁ ଚାଲିଗଲା ।

ଚଞ୍ଚଳ—ମନ୍ଦୋ !

ମନ୍ଦୋ—ମୋର ନାଁ ମନ୍ଦୋଦରୀ ।

ଚ—ସମସ୍ତେ ତ ତତେ ସଫା ମନ୍ଦୋ ବୋଲି କହୁଛନ୍ତି । ସେ ଯାହାହେଉ, ତୁଇ ବଡ଼ା ସୁନ୍ଦର, ବଡ଼ା ଶାନ୍ତ ବୋଲି ଶୁଣି କରି ମୁଁ ବାଘ ହେବାକୁ ଆସିଛି ।

ମ—ଧାତ୍ ଗାଡ଼ଶୁଆ, ମାଉଲଖିଆ ।

ଚ—ଆଃ କେଡ଼େ ମଧୁର କଥା ! ସାକ୍ଷାତ୍ କୋଇଲି !

ମ—ଏ ଅଁଟକୁରୀ । (ଭ୍ରୁକୁଟି ଦେଖାଇ)

ଚ—ଆଃ, ଗୋଲାପ ପରି ସୁନ୍ଦର !

ମ—ତତେ ମୁଇଁ ବାଘ ହେବ ନାହିଁ ।

ଚ—ମନ୍ଦୋ, ତୁଇ ହଁ କର ବା ନାହିଁ କର । ମୁଇଁ ତତେ ବାଘ ହେବ ।

ଠିକ୍ ଏତିକ ବେଳେ ରାମ ସେ କୋଠରୀକୁ ଆସିଲା । ଚଞ୍ଚଳ କହିଲା, “ତୁମର ଝିଅର କଥାବାର୍ତ୍ତାରେ ମୁଇଁ ବଡ଼ ଖୁସୀ, ଆମ୍ଭେ ଏଇ ରବିବାର ଦିନ ବାହାଘର ଠିକ୍ କରୁଛୁ ।” ମନ୍ଦୋ କହିଲା,“ଏ ରବିବାର ଦିନ ତତେ ଦେଖିବି, ଗାଡ଼ଶୁଆ ।” ତାପରେ ମନ୍ଦୋ ତାର ବାପାକୁ ଯାବତ୍ ଗାଳି ଦେଇ ବସିଲା । ଚଞ୍ଚଳ ରାମକୁ କହିଲା, “ତୁମ୍ଭେ ତୁନ୍ ପଡ଼ିଥା, ତୁମ୍ଭେ ଯାଇଥିଲା ବେଳେ ମନ୍ଦୋ ମୋର ସଙ୍ଗେ ଯେପରି ଢଙ୍ଗରେ କଥାବାର୍ତ୍ତା କରିଛି, ମୁଁ ନିଶ୍ଚେ ବାଘ ହେବ । ତୁମ୍ଭେ ବାଘର ଯୋଗାଡ଼ କର । ବନ୍ଧୁ ବାନ୍ଧବଙ୍କୁ ଡାକ । ବାଘଲାଗି କପଡ଼ାଲତା, ଅଳଙ୍କାର ଆଦି ଆଣିବାକୁ ମୁଁ ବର୍ପାଲି ଯାଉଛି ।”

GPNanda Colln., Digitized by srujanika@gmail.com

ରବିବାର ଆସିଲା । ଭେଜିର ଯୋଗାଡ଼ ହେଲା । ମନ୍ଦୋକୁ ତେଲହଳଦୀ ଘଷେଇ ଘଷେଇ ମଖେଇ ଗାଧୋଇ ପାଧୋଇ ଆଣିଲେ । ଅଳଙ୍କାରମାନ ମାଜ ଘଷି ପିନ୍ଧାଇ ଦେଲେ—ବାଳ-କୁଣ୍ଡାଇ ଦେଇ ବେଣୀ ପକାଇ ଦେଲେ, ପାଦରେ ପଇଁଷ ପାପୁଜଲ୍; ଅଙ୍ଗୁଳରେ ବଟୁଆଁ ମୁଦ; ଅଣ୍ଟାରେ ଅଣ୍ଟାସୁତା, ଗୁଂଥି; ବାହାରେ ତାଡ଼, ବାହାସୁତା ; ଅଙ୍ଗୁଳରେ ମୁଦ, ଅଙ୍ଗୁଠି ; ହାତରେ କଲିଆସ୍ତ, କାମକଟା ଚୁଡ଼ି; ବେକରେ ସୁନାସୁତା, ସୁନାମାଳ ; କାନରେ ଶିକୁଳିଲଗା କର୍ଣ୍ଣଫୁଲ, ମଚ୍ଛିକଡ଼ି ଫିର୍-ଫିସ ; ନାକରେ ଦଣ୍ଡି, ବସୁଣୀ, ନଥ ; ମୁଣ୍ଡରେ ଲକ୍ଷଟପାଟି, ଜହ୍ନାବେଲି ଖଞ୍ଜିଦେଲେ । ଆଖିରେ ସରୁ କଜଳଗାର ଓ କପାଳରେ ଗୋରୋଚନା ଟିକା ଦେଲେ, ଡେବଣ ହାତର ଓ ପାଦର ନଖମାନଙ୍କୁ ଲାଲ ରଙ୍ଗରେ ରଙ୍ଗାଇ ଦେଲେ, ପାଦରେ ଅଲତା ଲଗାଇ ଦେଲେ । ସବାଶେଷେ ଖଣ୍ଡେ ଲମ୍ବ ଓ ସରୁ ନୂଆ ଶାଢ଼ୀଖଣ୍ଡେ ପିନ୍ଧାଇ ଦେଇ ବସାଇ ଦେଲେ । ମାତ୍ର ମନ୍ଦୋର ମୁହଁରେ ଆନନ୍ଦର ଚିହ୍ନ ନାହିଁ । ବିବାହ ମୁହୂର୍ତ୍ତ ଆସିଗଲା—ବରର ଦେଖାନାହିଁ । ବନ୍ଧୁବାନ୍ଧବ ଫୁସୁର୍ ଫାସର୍ କଥା ହୋଇ ବସିଲେ । ପଧାନ ବୁଢ଼ାର ମୁହଁ ସଗରେ ନାଲ ହୋଇ ଗଲାଣି । ମନ୍ଦୋ ଯେ ଲାଜ୍‌ଲଜ୍‌ନାରେ ପକାଉଛ ବୋଲି କାନ୍ଦ ବସିଲା— ସମସ୍ତେ ଏକପ୍ରକାର ସ୍ଥିର କରିଦେଲେ ଯେ ବରପିଲା ଆଉ ଆସିବ ନାହିଁ ।

ଏ ସମୟରେ ଗୋଟିଏ ଷ୍ଟେଟ ବୁଢ଼ାଘୋଡ଼ାରେ ଚଢ଼ି ବରପିଲା ଆସୁଥିବାର ଦେଖାଗଲା । ଘୋଡ଼ାର ଆଣ୍ଠୁକୁ ଆଣ୍ଠୁ ବାଜୁଛି । ହାଡ଼ମାନ ବାର ହୋଇଯାଉଛି । ଘୋଡ଼ାର ପିଠିରେ ଛିଣ୍ଡା କନ୍ଥା ଖଣ୍ଡେ ପକାଇ ବରପିଲା ବସିଛି । ବରପିଲାର ବେଶ ଦେଖିଲେ

GPNanda Colln., Digitized by srujanika@gmail.com

ହସ ମାଡ଼ୁଛି । କେଉଁ କାଳର ଛିଣ୍ଡା ପୁରୁଣା କୁର୍ତ୍ତା ଡରସବ କହୁଣି ଡେଇଁଛି ; କେତେ ଜାଗାରେ ତାଳି ଦିଆଯାଇଛି, ମୁଣ୍ଡରେ ମକୁଟ ନାହିଁ, ଆଖିରେ ମୋଟା ମୋଟା କଜଳ, ମୁଣ୍ଡ ବାଳରୁ ତେଲ ଧାର ଧାର ବହୁଛି—ତାର ପଛେ ପଛେ ଯେଉଁ ଲୋକଟିଏ ଆସୁଛି, ତାର ବେଶ କଥା ନ କହିବା ଭଲ । ଭିକାରି ବେଶରୁ ବଳେ ।

ଘୋଡ଼ାରୁ ଓହ୍ଲାଇ ଚଞ୍ଚଳ ଠିଆ ହେଲା କି ପଧାନ ବୁଢ଼ା ବିରକ୍ତ ହୋଇ କହିଲା, ''ଯା, ଯା, ଶୀଘ୍ର ପୋଷାକ ବଦଳେଇ ଆସ ।'' ଜଣେ କୁଣିଆଁ ଆସିଥିବା ଭଦ୍ରଲୋକ କହିଲେ, ''ଆସ ମୋର ଘରକୁ ମୁଁ ନୂଆଁ ପୋଷାକ ଦେବି ।'' ଚଞ୍ଚଳ କହିଲା, ''ଏ ପୋଷାକ ପିନ୍ଧି ବାହା ହେବ ତ ହେବ, ନହିଲେ ନାହିଁ । ତୁମର ଝିଅ ମନେ ବାହା ହେବ କି ମୋର କପଡ଼ାକୁ ?'' ବାଧ୍ୟହୋଇ ସେ ବେଶରେ ଚଞ୍ଚଳକୁ ଓ ମନୋକୁ ଧରି ସମସ୍ତେ ମଣ୍ଡପକୁ ଗଲେ । ମଣ୍ଡପରେ ପୁରୋହିତ ଚଞ୍ଚଳକୁ କହିଲା, ''ମୁଁ ମନୋକୁ ବାହା ହେବି ବୋଲି କହ ।'' ଚଞ୍ଚଳ ଏତେ ଜୋରରେ କହିଲା ଯେ ପୁରୋହିତ ଭୟରେ ଥରି ଯିବାରୁ ହାତରୁ ପୋଥି ପଡ଼ିଗଲା । ପୋଥି ଗୋଟାଇବାକୁ ପୁରୋହିତ ନଇଁଲା, ପୁଣି ଚଞ୍ଚଳ ତାର ମୁଣ୍ଡରେ ଏପରି ଗୋଟିଏ ବିଧା ବସାଇଲା ଯେ ସେ ତଳେ ପଡ଼ିଗଲା । ପୁଣି ଉଠି ପୁରୋହିତ ବିବାହ ବାକ୍ୟ ଆଦି ପଢ଼ିଲା । ମାତ୍ର ମନୋ ଚଞ୍ଚଳର ରାଗ ଢଙ୍ଗ ଦେଖି ତାଳପତ୍ରର ବରଡ଼ା ପରି ଥରୁଥାଏ । ବିବାହ କାମ ଶେଷ ହେଲା କି ଚଞ୍ଚଳ ଗଞ୍ଜେଇ ଚିଲମ୍ ଲଗାଇ ଖୁବ୍ ଟାଣି କରିପିଇଲା ଓ ତାତଲା ଚିଲମ୍ ନେଇ ପୁରୋହିତର ମୁଣ୍ଡରେ ଝାଡ଼ିଦେଲା ଓ କହିଲା, ''ତାର ଦାଢ଼ୀ ଖାଇବାକୁ ମାଗୁଛି ପରା ।''

ତା ପରେ ଭୋଜ ପାଇଁ ସମସ୍ତେ ନିଜ ନିଜ ସ୍ଥାନରେ ବସି ଗଲେ । ଚଞ୍ଚଳ କହିଲା, "ମୁଁ ଓ ମୋର ସ୍ତ୍ରୀ ତ ରହି ପାରିବୁ ନାହିଁ,

GPNanda Colln., Digitized by srujanika@gmail.com

ଝଟ୍ ଗଲେ ଯାଇଁ ଚଲେ ।" ମନ୍ଦୋ କହିଲା,"ତୁମ୍ଭେ ମତେ ଯଦି ଭଲ ପାଉଛ, ରହ ।" ସେ କଥା ନ ଶୁଣି ଚଞ୍ଚଳ ଘୋଡ଼ାମାନଙ୍କୁ ଆଣିବାକୁ ଘାଁସିକୁ ଡାକଦେଲା । ମନ୍ଦୋ କହିଲା, "ହେଉ ଯିବ ତ ଯା, ଦୁଆର ମେଲା ଅଛି, ମାତ୍ର ମୁଁ ଆଜି ଯିବି ନାହିଁ, କାଲି ବି ଯିବି ନାହିଁ । ଯେତେଦିନ ତକ୍ ମତେ ସୁଖ ଲାଗିବ ନାହିଁ, ସେତେଦିନ ଯାଏ ଯିବି ନାହିଁ ।" ଚଞ୍ଚଳ କହିଲା, "ମନ୍ଦୋ ଏତେ ରୁଷ ନାହିଁ ।" ମନ୍ଦୋ କହିଲା,"ହେ ମିତ ! ମୁଁ ଯେତେଦିନ କହିବି ତେତେଦିନ ତୁମକୁ ରହିବାକୁ ପଡ଼ିବ । ବନ୍ଧୁବାନ୍ଧବ ଯେତେ ଖେଳରେ ବସିଛ, ହାତ ଲଗାଅ । ମୁଁ ଦେଖୁଛି ଯେ ମୁହଁ ବନ୍ଦ କରି ରହିଲେ ମତେ: ଭକୁଆ ହେବାକୁ ପଡ଼ିବ ।" ଚଞ୍ଚଳ କହିଲା, "ମନ୍ଦୋ, ବନ୍ଧୁବାନ୍ଧବ ତୋର କଥା ଆଜ କାଟିବେ ? ହଇମାନେ, ମୋର ସ୍ତ୍ରୀ କହି ସାଇଲା ଉପରୁ ଠାକବାର ଦରକାର ନାହିଁ । ହାତ ଲଗାଅ, ମୋର ସ୍ତ୍ରୀ ମୋର ସଙ୍ଗେ ଯିବାକୁ ହେବ । ମୋର ପଦାର୍ଥ ମୋର ସଙ୍ଗେ ନେବାର ମୋର ଅଧିକାର ଅଛି ।" ଏଇଟା ଚଞ୍ଚଳ କହି ଘାଁସି ତିନିଟା ଘୋଡ଼ା ପାଖେ ଠିଆ କରିଦେଲା । ଗୋଟିଏ ଘୋଡ଼ା ଉପରେ ଚଞ୍ଚଳ ମନ୍ଦୋକୁ ଚଢ଼ାଇ ଦେଲା । ନିଜେ ଗୁଟେରେ ଚଢ଼ିଲା । ଘାଁସି ଗୁଟେରେ ଚଢ଼ିଲା । ତିନିଜଣଙ୍କର ଘୋଡ଼ା ଦୌଡ଼ିଲେ । ରାସ୍ତା ଖରାପ, ଘୋଡ଼ାମାନେ ଦୁର୍ବଳ । ମନ୍ଦୋର ଘୋଡ଼ା କାଦୁଅରେ ପଡ଼ିଗଲା ଓ ମନ୍ଦୋ ବି ପଡ଼ିଗଲା । ଚଞ୍ଚଳ ଘୋଡ଼ାରୁ ଉତୁରି ଘାଁସିକୁ ତାର ଘୋଡ଼ାରୁ ତଳକୁ ଟିକି ଆଣିଲା, ଓ କୋରଡ଼ା ଉପରେ କୋରଡ଼ା ପିଟୁଥାଏ ଓ କହୁଥାଏ, "ତୁ ବଦ୍‌ମାସ ଏ ବାଟରେ କାହିଁକି ଆଣିଲୁ—ମୋର ସ୍ତ୍ରୀ କାଦୁଅରେ ଲଟପଟେଇ ଯାଉଛି ।" ମନ୍ଦୋ ନିଜେ କାଦୁଅ ସର୍‌ସର୍ ହୋଇ ଉଠି ଚଞ୍ଚଳକୁ ଛଡ଼ାଇ ବସିଲା । ଚଞ୍ଚଳ ଭୂମି ପଡ଼ିଲା । ସେ ପାଖେ

GPNanda Colln., Digitized by srujanika@gmail.com

ତିନଘୋଡ଼ା ପଳାଉଥିଲେ । ଶାଁସି କେତେ କଷ୍ଟରେ ସେମାନଙ୍କୁ ଧରି ଆଣିଲା । ତିନି ଜଣଯାକ ନିଜ ନିଜ ଘୋଡାରେ ଚଢ଼ିଲେ ଓ ଚଞ୍ଚଳ ଘରେ ଯାଇଁ ପହଞ୍ଚିଲେ ଠିକ୍ ସଞ୍ଜବେଳକୁ । ତିନି ଜଣଯାକ ଭୋକଶୋଷରେ ଆଉଳ ଝାଉଳ ହୋଇ ଯାଉଥିଲେ ।

ଘୋଡ଼ାରୁ ଓହ୍ଲୁରି ଚଞ୍ଚଳ ଓ ମନ୍ଦୋ ଘର ଭିତରକୁ ଗଲେ । ଚାକରମାନେ ଆସି ଭେଟ ହେଲେ ବ ଚଞ୍ଚଳ ସେମାନଙ୍କୁ ଯାବତ୍ ଗାଳି ଦେଇ ବସିଲେ, ମନ୍ଦୋ ମନା କଲେ, ହେଲେ ଚଞ୍ଚଳ ଆହୁରି ଆହୁରି ଗାଳି ଦିଏ ଓ ପିଟେ । ତାପରେ ଖାଇ ବସିବାକୁ ଜାଗା କରାଗଲା । ଭାତ ଓ ନାନାପ୍ରକାର ତିଅଣ, ତରକାରି, ଭଜା, ସନ୍ତୁଳା ଆଣି ରଖିଦେଲା । ମନ୍ଦୋ ଖାଇ ବସୁଥିଲା । ଚଞ୍ଚଳ କହିଲା, "ରହ ମୁଁ ଦେଖେଁ ।" ଚଞ୍ଚଳ ସବୁଠୁଁ ଟିକିଏ ଟିକିଏ ଚାଖି କହିଲା, "ଭାତ ଚାଉଳିଆ ହୋଇଛି—ତିଅଣ ତରକାରି ଯେ କେଉଁଟା ଅଲଣା, କେଉଁଟା ଲୁଣିଆ, କେଉଁଟା ଦରସିଝା ତ କେଉଁଟା ପୋଡ଼ିଯାଇଛି—ଖାଇଲେ ଲୋକ ବେମାର ହୋଇଯିବ । ଛି ଛି," ଏହା କହି ସବୁ ଗୁଟେ ଗୁଟେ କରି ଚଞ୍ଚଳ ଫିକ ଦେଲା—ହାତହୁଡା ଧୋଇ ମନ୍ଦୋ ଶୋଇବାକୁ ଗଲା । ଚଞ୍ଚଳ ଖଟ ପାଖକୁ ଯାଇ, "ଇ ଚାଦର ମଇଳା, ଇ ମୁଚୁଳା ଟାଣ" ବୋଲି ବାହାନ ବାହାନ ସବୁ ଫିଙ୍ଗି ଦେଲା ଓ ଖଟ ମଧ୍ୟ ଟଣା ହୋଇନାହିଁ ବୋଲି ଚାକରମାନଙ୍କୁ ଯାବତ୍ ଗାଳିଦେଲା—ମନ୍ଦୋ ଯାଇ ଗୋଟିଏ ଚୌକିରେ ବସିଲା ଓ ମନରେ ତୁଳାଇଲା—ମାତ୍ର କେତେସାରା ଚଞ୍ଚଳ ଚାକରମାନଙ୍କୁ ନାଲାୟକ୍, ଜହର୍, ନବୁଝିଆ ବୋଲି ଏଡ଼େ ପାଟିରେ ଗାଳି ଦେଉଥାଏ ଯେ ମନ୍ଦୋ ଶୋଇ ପାରିଲା ନାହିଁ ।

ସକାଳ ପାହିଲା, ଭୋକ, ଶୋଷ ଓ ମନରେ ମନ୍ଦୋ ଘାରି-ହୋଇଯାଉଛି । ମାତ୍ର ଠିକ୍ ପୂର୍ବଦିନ ପରି ସବୁକଥା ଚାଲିଛି ।

GPNanda Colln., Digitized by srujanika@gmail.com

"ମୋର ସ୍ତ୍ରୀ ପାଇଁ ଏପରି ଖରାପ ଜିନିଷ କିଏ ଆଣିଲା, କିଏ ଦେଲା" ବୋଲି କହି ଚଞ୍ଚଳ ସବୁ ଜିନିଷ ଫିଙ୍ଗୁଛି—ଚଞ୍ଚଳ ନ ଥିଲାବେଳେ ମନୋ ଚାକରକୁ କିଛି ଖାଇବାକୁ ଆଣିଦିଅ ବୋଲି କହିଲା । ଚାକର କହିଲା, "ମାଲପୁଆ, ପୁରି, ମିଠେଇ, ରସଗୋଲା, ସନ୍ଦେଶ, କାକରା, ଲଡୁ ସବୁ ଅଛି—ବାକି ତୁମ୍ଭର ଲିପୁକ କେଉଁଟା ହେବ ଯେ ବାବୁ ନ କହିଲେ କପରି ଦେବ, ମୁଇଁ ଗାଳି ଖାଇବ ।" ମନୋ କାନ୍ଦି କାନ୍ଦି କହିଲା, "ମୋର ବାପଘରେ ଉକାଶ ଯାହାପାଉଛି, ଏଠାରେ ମତେ ତାହା ବି ମିଳୁନାହିଁ, ମତେ କଣ ଭୂକେଁ ମାରିବାକୁ ଅଣାଯାଇଛି ।" ଦିନ ଦୁଇଟା ହେଲାଣି, ଚଞ୍ଚଳ ଗୋଟିଏ ଗିନାରେ ହାଲୁଆ ଗିନେ ଧରି ଆସି କହିଲା, "ମନୋ ଦେଖ ତ, ଚାକରମାନଙ୍କ ଲାଗି ତୁମ୍ଭର ଅସୁବିଧା ହେଉଥିବା ଦେଖି ମୁଁ ନିଜେ ଏଇଟା କରି ଆଣିଛି—ଦେଖ ତ ଭଲ ହୋଇଛି କି ନାହିଁ ।" ରାଗରେ ମନୋ କିଛି କହିଲା ନାହିଁ, ତହୁଁ ଚଞ୍ଚଳ ଗୋଟିଏ ଚାକରକୁ ଡାକି କହିଲା, "ଏଇଟା, ନେଇଯା, ମନୋର ପସନ୍ଦ ହେଲା ନାହିଁ ।" ମନୋ କହିଲା "ଖାଇ ବି ଦିଅ" । ଚଞ୍ଚଳ କହିଲା, "ଏତେ ପରିଶ୍ରମ କରି ତିଆରି କରି ଆଣିଲି ଧନ୍ୟବାଦଟେ ବି ମିଳୁନାହିଁ । ବୋଧହୁଏ ତୁମ୍ଭର ପସନ୍ଦ ହେଉନାହିଁ । ଫିଙ୍ଗିଦେବାର ଉଚିତ ।" ମନୋ କହିଲା, "ଧନ୍ୟବାଦ୍ ଆଜ୍ଞା, ଆଣିଦିଅ ।" ଚଞ୍ଚଳ କହିଲା, "ଟିକିଏ ଖାଇ ପକାଅ—ଦେହକୁ ଭଲ କରିବ ।" ମନୋ ହାଲୁଆର ଅଧେ ଖାଇଛି କି ନାହିଁ ଚାକର ଆସି ଗିନାଟା ଉଠାଇ ନେଲା । ଚଞ୍ଚଳ କହିଲା, "ମନୋ ଏତେ ଶୀଘ୍ର ଖାଇ ସାରିଲ, ଆସ, ଦରଜି ଓ ଭୁଲିଆ ଆସିଛନ୍ତି, କୁର୍ତ୍ତା ଓ ଶାଢ଼ୀ ମାପ ଓ ପସନ୍ଦ ଅନୁସାରେ ଆଣିଛନ୍ତି, ଦେଖିବା" । ଦରଜି ଓ ଭୁଲିଆ ଅତି ସୁନ୍ଦର କୁର୍ତ୍ତା ଓ ଶାଢ଼ୀମାନ ଦେଖାଇଲେ । ମନୋର ମନକୁ ଷୋଳ ଅଣା ଆସିଲା,

GPNanda Colln., Digitized by srujanika@gmail.com

ମାତ୍ର ଚଞ୍ଚଳ ସେ ସବୁକୁ ନାନା ପ୍ରକାରରେ ବାହାନ୍ ବାହାନ ଫିଙ୍ଗିଦେଲା ଓ ସେମାନଙ୍କୁ ପାଳି ବେଇଜ୍ଜତିକରି ବାହାର କରିଦେଲା ।

ସେତେବେଳକୁ ଦିନ ଦୁଇପହର ହେଲାଣି, ଚଞ୍ଚଳ ମନ୍ଦୋକୁ କହିଲା, "ମନ୍ଦୋ, ଚାଲ, ତୁମର ବାପା ଘରକୁ ଯିବା, ଏବେ ତ ସାତ ବାଜିଛି, ଠିକ ବେଳାକୁ ଖାଇବା ସମୟରେ ପହଞ୍ଚି ଯିବା ଯେ । ମନ୍ଦୋ କହିଲା, "ଗଲେ ଠିକ୍ ରାତି ଖାଇଲା ବେଳକୁ ପହଞ୍ଚିବା ।" ଚଞ୍ଚଳ କହିଲା, "ତା ହେଲେ ଆଜି ମୁଁ ଯିବନାହିଁ ; ଯେତେବେଳେ ବାହାରିବି ମୁଁ ଯେତେଟା ବାଜିଛି କହିବି ସେତେଟା ବାଜିଥିବ ।" ସେ ଦିନ ବି ଭୋକଶୋଷ ଓ ଅନିଦ୍ରାରେ ଗଲା, ଦୁଇଦିନ କାଳ ଖାଇବା, ପିଇବା ଓ ଶୋଇବାରେ ବେବନ୍ଦୋବସ୍ତ ହୋଇ ଥିବାରୁ ମନ୍ଦୋର ଶାରୀରିକବଳ ଯେପରି କମିଗଲା, ମନର ବଳ ମଧ୍ୟ ସେପରି କମିଗଲା ।

ଆରଦିନ ସକାଳୁ ଚଞ୍ଚଳ ଓ ମନ୍ଦୋ ବଉଗଡ଼ ଯିବାକୁ ବାହାରିଲେ । ଚଞ୍ଚଳ କହିଲା, "ବାଃ କି ସୁନ୍ଦର ଚନ୍ଦ୍ର !" ମନ୍ଦୋ କହିଲା, "ଏହା ତ ଚନ୍ଦ୍ର ନୁହେ, ସୂର୍ଯ୍ୟ ।" ଚଞ୍ଚଳ କହିଲା, "ମୁଁ କହୁଛି ପରା ସେଇଟା ଚନ୍ଦ୍ର । ମନ୍ଦୋ କହିଲା; "ମୁଁ ଜାଣେ ସେଇଟା ସୂର୍ଯ୍ୟ" । ଚଞ୍ଚଳ କହିଲା, "ମୁଁ ଏହାକୁ ଚନ୍ଦ୍ର, ତାରା ବା ଆଉ ଯା କିଛି କହିବି, ସେଇଟା ତା ହେବ । ନ ହେଲେ ଚାଲ ଫେରିବା ।" ମନ୍ଦୋ କହିଲା, "ମୁଁ ଜୁହାର କରୁଛି ଚାଲ, ମୁଁ କରିଆ କରୁଛି ଯେ ଇତାକୁ ତୁମେ ଯାହା କହିଲେ ବି ମୁଁ ମାନି ନେବି ।" ଚଞ୍ଚଳ କହିଲା, "ସେଇଟା ଚନ୍ଦ୍ର ।" ମନ୍ଦୋ କହିଲା, "ହଁ, ଚନ୍ଦ୍ର ତ ।" ଚଞ୍ଚଳ କହିଲା "ନାଇଁ, ନାଇଁ; ତୁମେ ମିଛ କହୁଛ—"ସେଇଟା ସୂର୍ଯ୍ୟ ।" ମନ୍ଦୋ-"ହଁ, ହଁ, ସେଇଟା ସୂର୍ଯ୍ୟ ସେମାନେ କିଛିଦୂର ଆଗକୁ ଗଲା ପରେ ଜଣେ ବୁଢ଼ା ଭଦ୍ରଲୋକଙ୍କୁ ଦେଖିଲେ । ଚଞ୍ଚଳ—"ଜୁହାର, ବୁଢ଼ୀ ।" ତାପରେ ଚଞ୍ଚଳ କହିଲା,

GPNanda Colln., Digitized by srujanika@gmail.com

"ମନୋ, ଏହାଠାରୁ ବେଶୀ ସୁନ୍ଦର ସ୍ତ୍ରୀ କେବେ ଦେଖିଛ ?
ଦେଖ୍ ତ, ତାହାର ଦେହ କେଡ଼େ ଚକଣ ଆଉ ସୁନ୍ଦର,
ଆଖିମାନ ଠିକ୍ ଚଗ ପରି, ଯା ତାକୁ ଆଲିଙ୍ଗନ କର ।" ମନୋ—
"ଆଃ, କେଡ଼େ ସୁନ୍ଦର ସତେଜ ଯୁବକଟିଏ । କାହିଁ ଯାଉଛ ଗୋ ?
ଯେଉଁ ବାପ ମାଆ ତୁମ୍ଭ ପରି ସୁନ୍ଦର ଝୁଅ ଜନମ କଲେ, ସେମାନେ
ଧନ୍ୟ ଧନ୍ୟ ।" ଚଞ୍ଚଳ—"ମନୋ, ତୁମ୍ଭେ ପାଗଳ ନୁହ ତ ? ସ୍ତ୍ରୀଟା
ଯେ ବୁଢ଼ାଟିଏ ?" ମନୋ—"ମତେ ମାଫ୍ କର; ବାବା, ଖରାରେ
ମୋର ଆଖି ଝିଲମିଲି କଲିଁ, ମତେ ସେମିତି ଦିଶିଲା ।" ସେ ବୁଢ଼ାର
ନାଁ ଗାଁ ପଚାରି ଚଞ୍ଚଳ ବୁଝିଲା ଯେ ସେ ତାର ମହାସାଦ ଗୋପାଳର
ବାପା । ସେ କହିଲା, "ବାବା, ମୋର ମହାସାଦ ମୋର ଶାଳୀକେ
ବାହା ହେବାର ଠିକ୍ ହୋଇଛି, ଯାଉଁ ।"

ତିନିଜଣ ଯାକ ଏକ ସଙ୍ଗେ ବରଗଡ଼ ଗଲେ । ଗ୍ରାମପଧାନ
ଘରେ ଏମାନେ ପହଞ୍ଚିଲା ବେଳକୁ ମଥୁରାର ବାହା ଭୋଜ ଚାଲିଥାଏ ।
ଏମାନେ ମଧ୍ୟ ଭୋଜରେ ବସିଲେ । ଗ୍ରାମ ପଧାନର ଭାଇ ଲକ୍ଷଣ
ପଧାନର ଝିଅ ଲତାର ବାହା ଆରମ୍ଭନ ହୋଇଥିଲା । ଲତା ଓ
ତାର ବର ବସନ୍ତକୁ ମଧ୍ୟ ଗ୍ରାମପଧାନ ଡାକଥିଲା । ଭୋଜ ସରିଲା ଉ
ସ୍ତ୍ରୀମାନେ ଘରଭିତରକୁ କଥା ହେବାକୁ ଚାଲିଗଲେ । ଘରବାହାରେ
ଲୋକମାନେ ନାନା ପରକାର ହସଥଟ୍ଟା କଳକଳ ହେଲେ ।
ଗୋପାଳ ଓ ବସନ୍ତ ଚଞ୍ଚଳକୁ କହିଲେ, "ସଙ୍ଗ ! ତୁମ୍ଭେ ଆଚ୍ଛା
ତଣ୍ଟିର ହାବୁଡ଼େ ପଡ଼ିଗଲ ହୋ । ତୁମ୍ଭର ଜୀବନଟା ମାହାଳିଆ
ହୋଇଗଲା ତ ! ସ୍ତ୍ରୀକୁ ଆଜ୍ଞା, ହଜୁର କରି ତୁମ୍ଭର ଦିନଟା ଯିବ ।"
ଚଞ୍ଚଳ—"ମୋର ସ୍ତ୍ରୀ ସଙ୍ଗେ ତୁମ୍ଭର ସ୍ତ୍ରୀମାନେ ସମାନ
ହେବେ ? ସେମାନେ ତ ମୋର ଶାଳୀ ପରେ ? ଶାଳୀମାନେ ମୋର
ସ୍ତ୍ରୀକୁ ଜିତ ଗଲେଁ ମୁଇଁ ଆଉ ଚଞ୍ଚଳ ଭୋଇକାଣା ସେ ? ମୁଇଁ

GPNanda Colln., Digitized by srujanika@gmail.com

ବାଜି ରଖୁଛୁ ଟ ୫୦୦୯ । ନିଜ ନିଜର ସ୍ତ୍ରୀମାନଙ୍କୁ ଡକାଇ ପଠାଅ, ଯାର ସ୍ତ୍ରୀ ଖଟ୍କେ ବମ୍ ଆସିଯିବ ସେ ଟ୫୦୦ ନେବ, ନ ହେଲେ ଟ୫୦୦ ଭରିଦେବ ।” ଗୋପାଳ ଓ ବସନ୍ତ ରାଜିହେଲେ ।

ପ୍ରଥମେ ଗୋପାଳ ଗୋଟିଏ ଚାକରକୁ ଡାକି କହିଲା, “ଯା, ମଥୁରାକୁ ଡାକି ଆଣିବୁ ।” ସେ ଚାକର ଗଲା, ମାତ୍ର ଏକାକୀ ଫେରି ଆସି କହିଲା, “ମା କହିଲେ, ସେ ଆସି ପାରିବେ ନାହିଁ ।” ଚଞ୍ଚଳ ହସି ହସି କହିଲା, “କଣ ହେଲା ? ମୋର କାମ ଲାଗିଛି ଯାଇ ପାରିବ-ନାହିଁ ସ୍ତ୍ରୀ ଜବାବ ଦେଲା ?” ତହିଁଉତ୍ତାରୁ ବସନ୍ତ ତାର ଚାକରକୁ ଡାକି କହିଲା, “ଯା ଲତାକୁ କହିବୁ ଏଠାକୁ ଆସିବ, ନ ଆସିଲେ ନ ଚଳେ ।” ସେ ଚାକର ଗଲା ; ମାତ୍ର ଏକା ଫେରି ଆସି କହିଲା, “ମତେ କାହିଁକି ଡକରା ହେଲା, ଯା, କହିଦେବୁ ସେ ସେ ଏଠାକୁ ଆସିବେ ।” ଚଞ୍ଚଳ ଥଟ୍ଟା କରି ହସିଲା ଆଉ କହିଲା, “ଛି ଛି, ସ୍ତ୍ରୀ ହୋଇକରି ମରଦକୁ ଏଥା କହିବ ?—ସେ ଆସିବନି ?” ତହିଁରୁ ଚଞ୍ଚଳ ଗୋଟିଏ ଚାକରକୁ ଡାକି କହିଲା, “ଯା ବାବୁ ମନ୍ଦୋକୁ କହିବୁ ମୋର ହୁକୁମ—ସେ ଇହାତେ ଆସୁ ।” ଗୋପାଳ ଓ ବସନ୍ତ କହିଲେ, “ହୁକୁମକେ ହାଜର ହୋଇଯିବା ବୋଲି ଆଶା କରୁଛ ?” ଚଞ୍ଚଳ କହିଲା, “ଦେଖିବ ।” ପଧାନବୁଢ଼ା ତିନି ଜୁଆଇଁଙ୍କର କଉତୁକ ଦେଖୁଥାଏ । ତାର ଆଖି ମନ୍ଦୋ ଉପରେ ଆଗ ପଡ଼ିଲା । ସେ ଆଶ୍ଚର୍ଯ୍ୟ ଓ ଆନନ୍ଦରେ କହି ପକାଇଲା ମନ୍ଦୋ ଆସୁଛି ତ, ମନ୍ଦୋ ମଧୁର ମନ୍ଥର ଗତିରେ ଚଞ୍ଚଳ ପାଖକୁ ଆସି କହିଲା, “କାହିଁକି ଡକେଇ ପଠେଇଲ ?” ଚଞ୍ଚଳ—“ତୁମର ଦୁଇ ଭଉଣୀ ମଥୁରା, ଆଉ ଲତା ଇହାଦେ କଣ କରୁ-ଅଛନ୍ତି ?” ମନ୍ଦୋ—“ଦୁଆରେ ବସି ସୋଜ୍ କଥା ହେଉଛନ୍ତି ।”

GPNanda Colln., Digitized by srujanika@gmail.com

ଚଞ୍ଚଳ—"ଯା, ସେ ଦୁହିଁଙ୍କୁ ଡାକି ଆଣ ।" ମନ୍ଧୋ ଘରଭିତରକୁ ଗଲା, ଗୋପାଳ କହିଲା, "ସେଟ୍ଟା ବଡ଼ ଆଚମ୍ବିତ କଥା ହେ ।" ବସନ୍ତ—"ସତେ ତ, ଇଥିର ଅର୍ଥ ମୁଇଁ ନାଇଁ ବୁଝି ପାଲିଁ ।" ଚଞ୍ଚଳ ଗମ୍ଭୀର ହୋଇ କହିଲା, "ଏଥିର ଅର୍ଥ ଶାନ୍ତି, ପ୍ରେମ, ମାଧୁର୍ଯ୍ୟ ଆଉ ସୁଖ ।" ରାମପଧାନ କହିଲା, "ବାବୁ ଚଞ୍ଚଳ, ତୁମ୍ଭେ ତ ସେ ଦୁଇବାବୁଙ୍କଠାରୁ ଟ ୧୦୦୦ ଜିତିଲ, ମୁଇଁ ତାର ଉପରେ ଟ ୨୦,୦୦୦ ଦେମି ; ତୁମ୍ଭେ ମତେ ନୂଆ ଟିଅଟେ ଦେଲ ।"

ମନ୍ଧୋ ସଙ୍ଗେ ମଥୁରି ଆଉ ଲତା ଆସିଲେ । ତିନଜଣ ଏକା ସଙ୍ଗେ ଠିଆହେଲେ । ଚଞ୍ଚଳ କହିଲା, "ମନ୍ଧୋ, ତୋର ଏ ଲଳାଟ ପାଟି ତୋତେ ନାଇଁ ଫବ୍ଲା । ହଟା, ହଟା, ମୋର ପାଖକୁ ଫିକ ଦେ । ଇ'ଟା ଦୁସ୍ରି ବନେଇ ବଲ୍ମା ।" ମନ୍ଧୋ ତୁରନ୍ତ ହଟାଇ ଦେଲା । ମଥୁରି ଓ ଲତା କହିଲେ, "ଛିଃରେ; ଇଥିର ଲାଗି ଆମକୁ ଡକା ହୋଇଛେ ?" ଚଞ୍ଚଳ କହିଲା, "ମନ୍ଧୋ, ଇଡେସ୍ତା ମାଇଝି-ମାନଙ୍କୁ ଶିଖାଇଦେ ତ, ମାଇଝିମାନେ ତାଙ୍କର ଘଇତାମାନଙ୍କର କପରି ଆଦେଶ ମାନବା କଥା ଓ ସେବା କରିବା କଥା ।" ମନ୍ଧୋ ସମସ୍ତଙ୍କ ଆଗରେ ମରଦ ପ୍ରତି ମାଇଝିର କର୍ତ୍ତବ୍ୟ କଣ ତାହା ଏପରି ବୁଝାଇଦେଲା ଯେ, ସମସ୍ତେ ଖୁସୀ ହେଲେ । ଆଉ ଚଞ୍ଚଳ ଓ ମନ୍ଧୋକୁ ବହୁତ ପ୍ରଶଂସା କଲେ । ଚଞ୍ଚଳ ମନ୍ଧୋକୁ, ଆଉ ୨୧୦୦୦ ଟଙ୍କା, ଆଉଁ କେତେକେତେ ସାମାନ୍ ଧରି କମଗାଁ ଗଲା ଓ ସେମାନେ ସୁଖରେ ଘରଦୁଆର କରି ରହିଲେ ।

---

ମୁଦ୍ରାକର—ଶ୍ରୀ ଚିନ୍ତାମଣି ମିଶ୍ର, ନବଜୀବନ ପ୍ରେସ, କଟକ-୨

GPNanda Colln., Digitized by srujanika@gmail.com

